# GUPTA GANGA

*By*

**Gopinath Mohanty**

*Published by*

JAGANNATH RATHA
BINODE BIHARI—CUTTACK-2

**Date of Publication – 12-10-1967**

# ସୂଚୀ



—୦—

ଓଁ

ବଡ଼ି ଅନ୍ଧାରୁ ।

କେଉଁଠିସାହ୍ନ ଚଣ୍ଡାଗାହାର ପଡ଼ଲା ଦୁମ୍-ଦୁମ୍-ଦୁମ୍ । ଉପି ବୁଢ଼ୀର ନିଦଟା ଚହଁକନା ଭାଙ୍ଗିଗଲା । ଝାଣ୍ଟିମାଟି କାନ୍ଥର ଗାଡ଼ ବାଟେ ଅନ୍ଧାର ହାଲୁକା ହେଲାଣି । ଘେଞ୍ଚିଆ ଘର ଭିତରେ ଥରେ ଆଖି ବୁଲେଇ ଆଣିଲା ।

କେହି ନାହିଁ ଶୂନ୍ୟ ! !

ଏ କୋଡ଼ ବର୍ଷ ତଳେ ଉମି ଏ ଘରେ ପହିଲ ଗୋଡ଼ ଦେଇଥିଲା ; ସେତେବେଳେ ଯେ ଏକା ଉଠ୍ ନ ଥିଲା ଏ କଚରାରୁ, ସେତେବେଳେ ବାଳ ଝୋଟ ନ ଥିଲା, ଗୁଣ୍ଡ ଚମ ଧୋକଡ଼ା ନ ଥିଲା, ଆଖି ନ ଥିଲା ଗାଡ଼ୁଆ, ଚୂଣପୋଣ୍ଡ ଚକ୍ଷଲ ଧରିବା ଭଳି । କବାଟ ସେପାଖେ କୁକୁରଟା ଲାଙ୍ଗୁଡ଼ ପିଟୁଛି !

“ସକକାଳୁ । ବାଡ଼ା-ବାଡ଼ା-ବାଡ଼ା-ବାଡ଼ା-ବାଡ଼ା ।”

ହଁ, ଏଇ ବୁଢ଼ୀ ଧୋକଡ଼ ସେତେବେଳେ ଟେକ୍ସା ଥିଲା, ସେଇଲି ବେଢେବର ସାନ ଝିଅ । ଭଗ ବନ୍ଧୁସର ଜୁଆର ଧରେ ଫଟର ପାଉଁଟେ—ଡୋଠା ଭିତରେ । ଆପେ ଘଡ଼ି[illegible] ଚ ଏ ପୋଡ଼ା

ଢିଅକୁ ଆସିଲ । ସେବେଇ ମହାନ୍ତ ଭାସିଲ । କେତେ ବାଟ ? ସେ ଦିନ, ସେ କେତେ ବରଷ ତଳେ । ଗଦେଇ ମହାନ୍ତ ଜଗି ବସିଛୁ, କବାଟ ସେପାଖେ, ବଢ଼ି ଅନ୍ଧାରୁ । ଜଗି ବସିଛୁ ଦୁଆର ମୁହଁରେ ଠେଙ୍ଗା ଧିଡ । ସଦା ଚୋକାଠା ବଜାଗା ହେଲଣି, ଘଡ ଘଡ କୁଆଡ଼େ ଗ୍ଭଲିଯାଉଛୁ । ମା ଛେତ୍ତଣ୍ଡ ବୋଲି କଣ ଯିବ ଏକଦମ ଚୁଲିକୁ ? ଗଦେଇ ଜଗି ବସିଛୁ ସେବେଇ ଗ୍ଭଲଗ୍ଭଣ୍ଡି ମାର ଖାଉଥିଲ ବାଟେ ପାର । ସକାଳୁ ଲଠି ଙ୍କ କହିଲ, "ଓଳଗି ଗ୍ରାମୁକରଣେ", ଗଲେ କଣେଇ ହସି । ବାପ୍‌ରେ, ସେ କ କଳଆ ! ସେତେବେଳେ ଡଣ୍ଡିରେ ଥିଲ ଜୋର, ଅଣ୍ଟାରେ ଥିଲ ସାହସ । ଶେଷରେ ଗଦେଇ ଫେରିଲେ; ଘଣ୍ଡଆ ଘଡ ଖେଳି ବେଦେବ ବାଘରୁ ସାରୁ ଖୋଲନେବା ଅପବାଦଟି ତାଇ ।

ତଥାପି ଙ୍କ ଭସି ଭସି ନାଖିଲ ଏଇ ଢିଅରେ, ଏଇ ମାଟିରେ ।

ଆଃ ! ସେ ଦିନର ରୋମାନ୍‌ସ କଥା ଖିବ ତାର କୋଟରିଆ ଆଖି ମିଟିମିଟି ହେଲ । ଯୋଡ଼ାଏ ମୋଟା ମୋଟା ହଳଦିଆ ଦାନ୍ତ ଶୁଖିଲ ଓଠକୁ ଥରେ ଯାପି ଧରି-ଲୁଚିଗଲ ମରିଣର ଗ୍ଭଇ ଉପରେ ଜୀବନର ଶେଷ ହସ ପରି ।

"ସକ୍‌କାଳୁ—ବାଡ଼ା ବାଡ଼ା ବାଢ଼ା ।"

ବଙ୍କା ଠିଆକାନକୁ ହଲେଇ ହଲେଇ ପାଖେଇ ଗଲ ଲାଙ୍ଗୁଡ଼ଟାକୁ ଓଟାର ପେଟତଳେ ଯାକି—ଚହିଗଲ ତାର କୁକୁରିଆ ଗନ୍ଧ, ଭଜା ରୁମ, ଟିଙ୍କ, କୁକୁରମାଛି ମିଶା ।

ଓଁ ଆଗେଇଲା, ବାଘି ପାଇଛି ସାତଭଉଣୀ । ଛନକୋଡ଼ ବରଷର ବୋଝ ନେଇ, ଗୋବରପାଣି ଛୁଞ୍ଚ୍‌କନାଠୁ ଆରମ୍ଭ କରି ବାସନ ମଜା ପର୍ଯ୍ୟନ୍ତ । ସବୁଦିନର ରୋଜନା କାମ, ତଥାପି ଆଜ କାହିଁକି ମନଟା କାନ୍ଦୁଛି, କାଠ ହୃଦଟା ସକେଇ ଉଠୁଛି ।

ସମସ୍ତେ କହନ୍ତି, ସଦେଇ ଚଳିକି କରି ଏଇ କାମ ଭୁଲେଇବା ପାଇଁ ଓଁକୁ ଅକୁଳର କରି ଟାଣି ଆଣିଥିଲେ । ଏତେ ବରଷ ଗଲା, ଓଁ ମନଟା ବୁଝିଲା ନାହିଁ, ନାଁ ନାଁ ମିଛ କଥା, ଯଦି ସତ ହୋଇଥାଏ ତେବେ ସେ ଜୀବନ ଗୋଟା ତାର ମାଟି ।

ସଦେଇ ମହାନ୍ତି ଯେଉଁ ଘରେ ଶୋଉଥିଲେ ସେଠି ଆଜ ଶାଗ ପଟାଳି, ଓଁ ନିତ ନଇଁପଡ଼ ପାଣି ଢାଳେ, ଘାସ ଉପାଡ଼େ ।

ଜଅମୂଳେ ବାସନ ମାଜ ବସି ଓଁ ଭାବିଲା, ଜୀବନରେ ଦୁଃଖ ସବୁଦିନେ, ସୁଖ କରିଛି ସେ ଅତି କମ୍, କଅଁଳ କଥା ଶୁଣିଛି ଅତି ଅଳ୍ପ, ଗାଳି ଶୁଣିଛି ବେଶି । କାମ ପାଇଛି କରିଛି ବେଶୀ, ଆଦର ଯତ୍ନ ପରିବର୍ତ୍ତେ ଖାଲି ବୋଲଣା । ଭଲ ଖାଇ ନାହିଁ, ଭଲ ପିନ୍ଧି ନାହିଁ । ଅନ୍ତତର ସେ ଦିନ ଦୁଇଟା ରହିଲାଣି ବର୍ଷ ବର୍ଷର ବୋଝ ତଳେ । ତା ପରେ ବାଳ ପାଚିଲା, ବଳ ଭାଙ୍ଗିଲା, ଆଖି ଖପି ହେଲା ଗାଡ଼ ।

ବାଡ଼ା ବାଡ଼ା ବାଡ଼ା—ଏଠି ବି ସେଇ ବଙ୍କା ଆଙ୍ଖେଇଛ ଦମୁଠା ଶୁଖିଲା ଭାତକୁ ।

ଅଣିତ ତାର କାନେ କାନେ ଡାକଯାଏ ଦିନ ଦିନଙ୍କର କଥା ।

"କଲୋ ଡମି, ଆଜ ଘର ହସ ହସ !"

"ଏ ଡମି, ଚଡେ ଏ ଡମି ନା କିଏ ଦେଲା ? ଯେମି ଭଲା ଦେଇଥାନ୍ତା ।"

"ରଇ ଥା ରଇ ଥା, କଣ ସବୁଯାକ ପଇସା ଛଡ଼େଇ ନବୁ, ଦେଖଇଚ ଦେଖିନୁ ଏ ପୁବରେ କଣ ଅଣିଚୁ ।"

ବାର ଡଲର ସେ ଭୂତଖିଆ ନଡ଼ଆଗଛ ପାଟରେ ଯେନ୍ତିକି ଜନକେନଅଁ ଖଜୁରିଗଛଟା ଲହସି ପଡ଼ୁଚୁ, ଡମି ସେଇ ଆଡ଼କୁ ଗୁହିଁ ସପନ ଦେଖେ, ହାତରୁ ବାସନ ଧୀରେ ଧୀରେ ଖସିପଡ଼େ । ହଠାତ୍ କାହାର କର୍କଶ କଥାରେ ସୁକୁମାରିଆ ସ୍ୱପ୍ନର ସୁଅ ଯାଏ ଭାଙ୍ଗି ।

"ଏ ଡଁ, ଏ ଚଲି ବୁଡ଼ୀ, ବାସନ ମଜା ସରିଲା ।" ଡଁ ଚରଚର ହୋଇ ଲାଗିପଡ଼େ । ମଲବୋଉ ସଦେଇ ମହାନ୍ତ ବୋଉ; ବିଧବା ।

ବାସନ ଘିଁଚ ଯାଉ ଯାଉ ଦଣଗଡ଼ ନଦପରେ ଫାଲୁ ଫାଲୁ ମୁହଁରେ ବାସିପାନ ଖଣ୍ଡେ ଯାକ ନଦ ମଲ ମଲ ଆଖିରେ ସନାବୋଉ କବାଟ ଖୋଲିଲେ । 'ମଲା ମୋ ସକ୍କାଳୁ କାହା ମୁହଁ ଗୁହିଁଲି ଅଜ ।'

'କାଇଁ, କଣ ହେଲି କି ?'

କଜଆ ଲଗିଲା । ସନାବୋଉ କଜଆ ସାରି ଗଲେ ଗାଧେଇ । କୋଉଠୁ କାଠ, କୋଉଠୁ ଶାଗ-ମୂଳ ଅଣିବାକୁ ତ ପଡ଼ିବ,

ନ ହେଲେ ଏ ପିଲାଗୁଡ଼ାକ ବଞ୍ଚିବେ କପରି ? ଏତେ ଅବସ୍ଥାରେ ବି, ସେ ଯେ ନିଜେ ଏ ଘରର ଜଣେ ।

ଗାଡ଼ିଆ ବାଟକୁ ଗୁହ୍ନାଁଟିଦେଇ ସନାବୋଉଙ୍କ ବାଡ଼ରୁ ଡଁ ଓଟାରିଲା ବଡ଼ା ଝାଟି, ପାଟିକରି କହିଲା, ମଲା ମୋର, ଏ ନିଆଁଲଗା ନିଆମି ଗାଈଗୁଡ଼ାକ କଣ ହଉଛନ୍ତି ମ, ମଣିଷ ଗାଧୋଇ ଗଲେ ଭାଙ୍ଗିଲେ ବଡ଼. ଉଠ୍ ଠ୍ ଠ୍ । ବଡ଼ା ଝାଟି ଓଟାରି ଅଣି କୁଟେଇଲା ମଲାବୋଉ ବେଖେଇଘର ପିଣ୍ଡାରେ । ତା ପରେ ବଟେଇ ବାଡ଼ିରୁ ହାତଗଲେଇ ନେଇଆସିଲା. ସେ ବାଙ୍କୁଲି କଷି କଖାରୁଟା ।

ସକାଳ — ଦିନ — ଦିପହର ।

ହମନ୍ତେ ଖାଇସାରି ଶୋଇଲେ, ଡଁ ବସିଲା ପଖାଳ କଂସା ପାଖେ, 'ହେ ବୋଡ଼୍, ଏ ପଖାଳଗୁଡ଼ାକ କଣ ମିଳେଇ ଯାଉଛି ।' — 'ମଲା ମୋ, ଭଲ ଖାଇବେ ଖିସଖେଚଡ଼ି । ଖାଇ ଖାଇ ତ ଖଟକ୍ରି ଖାଇଲଣି. ଆଉ ପଖାଳଗୁଡ଼ାକ ଗନ୍ଧୋଉଚ ।'

ପିଲାଗୁଡ଼ାକ ପାଳି ଧରିଲେ, "ଖାଇବେ । ଖାଇବେ ।" 'ମାର ମୁହେଁ' । "ହଇ ଲୋ, ହଇ ଲୋ, କେଡ଼େ ବଡ଼ କଥା କହିଲୁ ; ହଇ ଲୋ, ହଇ ଲୋ" ଲାଗିଲା କଜିଆ, ଡଁ ଢୋକେ ପିଏ, ପଦେ କହେ, ଏମିତି ଏମିତି କରି ଗୋଡ଼ ପର୍ଯ୍ୟନ୍ତ ଚୋପଣି ଟେଣ୍ଡିଲା ।

ଦିନ ଦିପହର, ଖରାଆଡ଼ ଶୂନ୍‌ଶାନ୍ । ଡଁ ପୁଣି ଗଲା ବାସନ ମାଜି ।

ହଠାତ୍ !

ଓଁ ଟିପେଇ ଟିପେଇ ଆଗେଇଲା । ଅରମା ଭିତରେ, ଯେଉଁଠି ବାଘୁଆଳ ପେନ୍ଥା ପେନ୍ଥା ବାଘୁ ନଚା ଚଳେ ଗୁଗୁଚିଆଟି ପର୍ଯ୍ୟନ୍ତ ଦିଶୁ ନାହିଁ । ତାଙ୍କ ସାହି ସାଉଟିଆ ନା ? ଚୋକଟା କିଏ ? ହିଁ, ସେଇ ଚରା ଡୋଚିଆ ଗାମୁଛା ଖଣ୍ଡ ନ । ଚଳି ! ଓଁ ଚୁହିଁ ରହିଲା । ଘଞ୍ଚ ନଟା ଉଡ଼ାଳରେ ଫୁର ଫୁର ମୁଣ୍ଡି ମଲ୍ଲି ମୁହଁଯାକଲା ବସନ୍ତମୁହାଁ ସାଉଟି ବେକତଳେ । ସେଇ ଗୁହାଣୀ, ଯାହା ସେଦିନ ସେ ଦେଖିଥିଲା ସଦା ଆଖିରେ ।

ବାହାରେ, ବାଟ ମଝିରେ କଣା ନୋଟାଟା ଜଳ ଜଳ ଦିଶୁଛି, ହୁଏ ତ ପାଣି ଟୋପାଏ ବି ନ ଥିବ ।

ମଲ୍ଲି କୂଅମୂଳେ ଆସି ଗୋଡ଼ ଧୋଇବାକୁ ପାଣି ମାଗିଲା, "ଉଃ ଭାରି ପେଟ ଟାଣୁଛି ।"

"ଏତେ ଅରମାକୁ କାହିଁକି ଗଲୁ ।" —ଓଁ କହିଲା ।

ମଲ୍ଲି ଲାଜ ଲାଜ କରି ଧିଅଟାକୁ ଟିକିଏ ହଲେଇ ଦେଇ ଆସ୍ତେ ବଙ୍କେଇ ଦେଲା, ପ୍ରକାଶ ଅରମାକୁ ନ ଗଲେ ତାକୁ ଲାଜମାଡ଼େ । ତା ପରେ ଶଙ୍କି ଶଙ୍କି କଣେଇ କଣେଇ ସନ୍ଦେହ ମିଶା ଗୁହାଣୀ ଚୁହିଁ ଭିତରକୁ ଚୁଳିଗଲା ।

"ସନାବୋଉ ଶୁଣିଲଣି ।" କଷାଗୁଆଦିଆ ଚରୁଡ଼ାଏ ଚୁଳିଲା ପାନ ବଦଳରେ ଓଁ କହିଦେଲା । ଭରିବଅସର ଚାଳ, ସ୍ବେଚ୍ଛଗୁହାଣୀର ନଶା, ତା ଭିତରେ ସୁଟେଗ ଯୁଟେଗ ମଲ୍ଲି ଆଉ ସାଉଟିଆ, ସବେଇ ଆଉ ଜମି । ତାର ଥଣ୍ଡା ରକ୍ତ କଣ ସବୁ

ଘାସୋରୁଛୁ ନା ଏ ବ୍ୟର୍ଥତାର ବିଦ୍ରୋହ ? କି ମଲାର ଈର୍ଷା ଗାଅନ୍ତା ପ୍ରଭୁ ? ଓଁ ନିଜେ ବି ଜାଣିନାହିଁ ।

"ଘନାବୋଉ ଶୁଣିଲଣି ?"

ଘନାବୋଉ ଶୁଣିଲେ । ଓଳିଆ ସେପାଖେ ଛିଣ୍ଡା ସତରଞ୍ଜି ଉପରେ ଛଟାଗାଳି ଶୋଇ ଗୋପାଳିଆ ଶୁଣିଲା । ଦୁଆରମୁହଁ ସେପାଖେ ଧକୋଉ ଧକୋଉ ହୁଏ ତ ବଙ୍କା କୁକୁର ଶୁଣିଲା ।

ଘଣ୍ଟାକ ଭିତରେ ଲାଗିଲା ବାରୁଦରେ ନିଆଁ । କାନ୍ଦଣା, ଗାଳି, କଟାସମ୍ପା, ଅଣ୍ଟା ଭିଡ଼ାଭିଡ଼, ଫୋପଡ଼ା କଚଡ଼ା, ଦୁଲ୍, ଦାଲ୍, ଗୁମ୍ ଗାମ୍ । ଛୁଞ୍ଚୁଣୀ, ନଖ, ଗୋଡ଼ହାତ ।

"ଯା ଯା, ନିକଲ୍ ନିକଲ୍ ।"

ଗୋଇଠା ମାରି ତା ସମଗ୍ର ସମ୍ପତ୍ତି ଫୋପାଡ଼ି ଦେଲେ ଦୁଆରେ । ଭଙ୍ଗା ପେଟ୍ରା ଖଣ୍ଡି କେତେ ଯତ୍ନରେ ସେ ସାଇତି ରଖିଥିଲା, ଆଉ ଲୁଗା ପୁଟୁଳି । ଓଁ କାନ୍ଦି କାନ୍ଦି ଗୋଟେଇ ନେଲା ସବୁ ଜିନିଷ ଗୋଟି ଗୋଟି କରି । ଓଳିତଳେ ପଡ଼ିଥିଲା କେତେ କାଳର ଦାନ୍ତଭଙ୍ଗା ପାନିଆଁଟି, ଏ ଖଣ୍ଡି ତା ବାପ ଘରର ।

* * *

ହାଣ୍ଡି କଳାଠୁ ବଳି ଅନ୍ଧାର । ଆକାଶରେ ମେଘ । ପାଖ, ଦୂରର ଗଛଗୁଡ଼ାକ ଦିଶୁଛି ଜମାଟବନ୍ଧା ଅନ୍ଧାରର ବୋଝ ପରି । ନଈ ଅଡ଼ଡ଼ା ଉପରେ ସରୁ ବଳିଟି ବଙ୍କେଇ ଗଳିଛି ଧାନଘରପଡ଼ା ।

ଖଣ୍ଡିଆ ପେଣ୍ଡାଟି ଉପରେ ଭର ଦେଇ ବସିଛି ଓଁ, ଗୁଡ ଉପରେ ସେ ପ୍ରବାବୁଜାଳୁଛି । ଲୁହରେ ଲୁହରେ ପାଟି ଲୁଣି ମାରଗଲାଣି । ଧୂଅ ଗୋଟା ଦରଜ, ହୁଏ ବା ତାଡଛି ।

ବୃଥା-ବୃଥା-ବୃଥା ।

ଏ ଜନ୍ମଟା ଗଲା ବୃଥା ।

ଠାକୁର ? ଠାକୁର କାଲ, ଠାକୁର ପଥର, ଠାକୁର ଏଇ ମାଡ଼, ଏଇ ଦୁର୍ ଦୁର୍, ଏଇ କଳା ମିଶ୍ ମିଶ୍ ଅନ୍ଧାର ।

ସବୁ ମାଟି ।

ଓଁ ଥର ଥର ଉଠି ଆଗେଇଲା । ସଂସାର ଉପରେ ଏଇ ତାର ଶେଷ ଅଭିମାନ । ଆଗକୁ ଆଗକୁ ।

ଦୋଟା-ପଡର ପାଉଁଟା—ହସମୁହାଁ ସଦେଇ ।

ବ'ଖିଆ ନନ୍ଥ ମାଟିରେ କେତେ ଗଢ଼, ସବୁ ଯାଏ ମିଳେଇ ।

ପାଣି ହାବୁକା ମାଶ ଅତଡ଼ରୁ ବ'ପୁଳା ଖାଇଲା । ଏମିତ କେତେଠି ଖାଏ ।

ସବୁ ଶନ୍‌ଶାନ୍ । ଖାଲି ଅଲ୍ପ ଦୂରରେ ବଙ୍କା କୁକୁରଟା ଟେକାମୁଡ଼ କପେଇ ଲାଙ୍ଗୁଡ଼କୁ ପାଞ୍ଚ ଥର ଚଲେ ପିଟି ଦେଇ ସ୍ୱର ମେଳିଲା ।

"ଉଓ୍ୱୋ-ଓ-ଓ-ଓ-ଓ-ଓ...... ।"

---

# ବା'କେ କଥା

"ତାର କଳାମେଘ ପରି ଆଖି, ପୁନେଇଁ ଜହ୍ନ ତଳେ ଯୋଗଷ ଫୁଲର ଭେଞ୍ଜ ପରି ତାର ହସ, ଶାନ୍ତ ସ୍ନହକ, ସୁନ୍ଦର, ତଥାପି, ଆକାଶ-ଭଙ୍ଗା ବଇଶାଖୀ ଝଡ଼ ପରି ତାର ଆବେଗ, ସୁନ୍ଦର, ଅତି ସୁନ୍ଦର ।

ସେ ମୂର୍ତ୍ତିଟା ଭିତରେ ହଜିଯାଏଁ ମୁଁ କେଉଁ କଣାରେ; ହଜି ଯାଏଁ, ଖୋଜି ଖୋଜି ଖିଅ ପାଏ ନାହିଁ ମୋ ନିଜର ଯେତେବେଳେ ସେ ହସେ, ଯେତେବେଳେ ସେ ମତେ ଚାହେଁ ।

ତାକୁ ଛ ଜଣ ପାଏ ?

ଯେଉଁ କାର୍ତ୍ତିକ ପାଏଁ ତହିଁରେ ତ ନିଜକୁ ଭୁଲି ଯାଏ, ଆଉ ଅଧିକା ହେବ କଣ ? ମିଳିବ କାହୁଁ ? ସ୍ତେରବସନ୍ତ ଥିରି ଥିରି ଆସି ଡାକେ, 'ଉଠ ।' ଆମ୍ରଗଛରୁ ପର ଶବ୍ଦ ଶୁଣି କୋଇଲି ଡାକେ, 'ଉଠ, ଉଠ, ଉଠ ।' ଚାରିପାଖର ନିଷ୍ପ୍ରାଣ ପ୍ରକୃତି ଜୀବନ ପାଇ ଡାକେ "ଉଠ, ଉଠ, ଉଠ ।" ପ୍ରେମ ପରି ଚମକି ଚମକି ଚାହେଁ — କାହିଁ ? କିଏ ? ମିଛ । କେହି ନାହିଁ ।

ତାରି ଭୁଲି ପଡ଼ି ନାହିଁ ଯହିଁରେ, ସେ ମୋର କଣ୍ଠ ନୁହେଁ — ତାର ହସ ମୋ ସରଗ, ତାର କହାଣୀ ମୋର ଜୀବନ । ତାକୁ ଛଡ଼ି ଏ ବସନ୍ତ ମିଛ, ଏ ଉଲ୍ଲାସ ବିଦ୍ରୂପ, ଏ ପୁଲକ — ହାହାକାରର କ୍ରନ୍ଦନ ।"

ଥର ଥର କଲମଟି ଖସିପଡ଼ିଲା । ଛଳ ଛଳ ଆଖିରୁ ବୁନ୍ଦାଏ ତତଲା ଲୁହ ଅଜାଣତେ ବୋହି ଆସିଲା କାଗଜ ଉପରକୁ । ନାଃ— ଆଉ ଲେଖା ଚଳିବ ନାହିଁ । ଘର ମୁଣ୍ଡଟାକୁ ହାତ ଉପରେ ରଖି ସୁନ୍ଦର ନେସ ଆଉଜ ପଡ଼ିଲା ଟେବୁଲ ଉପରକୁ ।

ପଛଆଡ଼େ ଲତିକା ଏ ପର୍ଯ୍ୟନ୍ତ ଛପି ଛପି ରହିଥିଲା । ଧୀରେ ଆଉଜିପଡ଼ି ସ୍ୱାମୀ ମୁଣ୍ଡରେ ହାତ ବୁଲାଇବାକୁ ଲାଗିଲା । "ମୁଣ୍ଡ ବଥାଉଛି କି ? ଚିପି ଦେବି ?"

ମାଧବ ଓଲଟିପଡ଼ି ଦେଖିଲା । ନଜରରେ ମୂହଁ ତାର କେମିତି କେମିତି ହେଲାଣି । ଦୁଇ ଜଣ ମୁହଁ ଚାହାଁଚାହିଁ ହେଲେ । ଲତିକାର ଧୃଷ୍ଟମିଶା ଉଦ୍‌ବେଗକୁ ମାଧବର ପରମ ମିଶା ସ୍ନେହ, ତା ପରେ ଧରୁ ଧରୁ ଲତିକା ଖସି ପ.ର । ଖାଲି ଟିକଏ ଗୁବରର ଝଣ୍ ଝଣ୍ ଆଉ ରୋଷେଇଘରୁ ଚୁଲି ଫୁଙ୍କିବାର ଶବ୍ଦ । ମାଧବ ଟିକଏ ଥକ୍କା ମାରି ପୁଣି ଧରିଲା କଲମ—"ହାହାକାରର କ୍ରନ୍ଦନ । ହୁଁ— ତା ପରେ ?"

ଏ ବିପତ୍ତି ତାକୁ କିଏ ଦେଲା ? ଏତେ ବର୍ଷ ପରେ ହଠାତ୍ ଏ ଗଳ୍ପ ଲେଖିବା ସଉକ ତାକୁ ଗିଳି ବସିଲା କି ଦୁଃଖରେ ? ବରଷା ପାଗ ଦେଖି କୁଙ୍କିଚକାଙ୍କିଚ ବଚବି ବସିଥିଲା ଚଉକି ଉପରେ । କିଣ ଏଣୁ ତେଣୁ ଭାବୁ ଭାବୁ ଝରକା ସେପାଖ ପାହାଡ଼ା ଗଛ ଉପରୁ ଆଖି ଗଲା ଦୂର ଆକାଶର ମେଘ ଉପରକୁ । ତା ପରେ କିଣ ଅଜଣା ଦୁର୍ବଳତା ଆସି ଗ୍ରାସିଲା ତାର ଏ ପଥୁରିଆ ମଗଜକୁ, ଶେଷରେ "ହାହାକାରର କ୍ରନ୍ଦନ ।" ପୁଣି ତତଲା ଲୁହ ଟୋପାଏ ବି ! ଏ ବୟସରେ !

ଯାହା ତ ହବାର ହେଲା, କଣ ଲେଖିଲା ସେ ଏ ଯାକେ ? ତା ପରେ କଣ ହବ ? ଉଠି ପଡ଼ି ଏ କାଗଜ ସେ କାଗଜ ସେ ଖୋଜିଲା, ଅନ୍ତ ବକଳରେ, ସତେ ଯେପରି ଗୋଟାଏ କଣ ବଡ଼ ଭାବ ଆସି ଯାଇଛି ତା ମୁଣ୍ଡରେ, ସେଥିପାଇଁ ସେ ଖୋଜୁଛି, ଶେଷରେ ବାହ୍ୟ ଖୋଲରୁ ପାଇଲା ସେ ଖଣ୍ଡେ ଦରପୋଡ଼ା ବିଡ଼ି ।

ଦୁଇ ତିନ ଫୁଙ୍କ ଧୂଆଁରେ ସୁଦ୍ଧା ଆଉ କିଛି ମନେପଡ଼ିଲା ନାହିଁ "ହାହାକାରର କ୍ରନ୍ଦନ !" "ହାହାକାରର କ୍ରନ୍ଦନ" । "ବେଶ୍ ହେଇଚି ତ ହୁଁ — ଶ୍ରୀମନ୍ତ — ।"

"ମେଘୁଆ ପାଗ, ବେଳ ଜଣା ପଡ଼ୁନାହିଁ । କେତେ ହବ ?" ଗୁଣୁ ଗୁଣୁ କଲା, "ହାହାକାରର କ୍ରନ୍ଦନ, ହାହାକାରର କ୍ରନ୍ଦନ ।" ତା ପରେ କହିଲା—"କେତେ ହଉ ।"

"ଭୋଜନ, ତା ପରେ 'ପାନ' । ଆଃ, ଖାଇଗଲା, ଖାଇଗଲା କଲ, ହଜାରେ ଥର କହିଚି କୁନିଟା ଝିଅଟି ଆଉ କାହା ବାଦ—"

ଲତିକା ତାଙ୍କୁ ଦେଖି ଗର୍ଜିଲା । ମାଧବ ଗର୍ଜିଲା ତାର ଦୁଇ ଆଖିକୁ, ତା ପରେ ହସିଦେଲା ।

ଜାମା ଯୋଡ଼ି ଦେଇ ମାଧବ ଚାଲିଲା ଇସ୍କୁଲକୁ ମନ୍-ମନ୍ ଦୁମ୍-ଦୁମ୍ । ଦେଢ଼ ବର୍ଷର ଗୁଡ଼ିକ ! ଅଧବାଟ ଯାଇ ପଛକୁ ଫେରି ଅନାଇଲା, ଲତିକା ଚାହିଁଛି ଉଦାସ ଆଖିରେ । ମାଧବ ଟିକିଏ ଆଖି ମିଟିକା ମାରିଲା । ତା ପରେ ସିଧା ସାମ୍ନାକୁ । "ହୁଁ, ହାହା-କାରର କ୍ରନ୍ଦନ, ତା ପରେ ତ ଆଉ କିଛି ମନେପଡ଼ୁ ନାହିଁ ଗପଟା ନ ସାରିଲେ ତ ମନ ମାନୁ ନାହିଁ ।" କେତେ କଥା ମନେ ପଡ଼େ । ସେତେବେଳକୁ ଆଖିରେ ବର୍ତ୍ତମାନ ସେ ତ ବୁଢ଼ା ।

ଚାଉଁଶଟା ବର୍ଷ ବାହାଘର, ଯେ କୌଣସି ମତେ ହସ ଖେଳ ମଝିରେ ପୁରୁଣା ଗତକୁ ଜୀବନ ଦେଇ ରଖିଛି ସେ । ରୋମାନ୍ସ ! ରୋମାନ୍ସ କାହିଁ ? ସେତେବେଳେ ସେ ଭାବୁଥିଲ, 'ତାର' କଳାମେଘ ପରି ଆଖି, ସ୍ୱପ୍ନରାଜ୍ୟରେ ତାର ନିଜର ମନଗଢ଼ା, ଖାଲି ଫୁର୍ତ୍ତି, ଫୁର୍ତ୍ତି-ଫୁର୍ତ୍ତି । ସେତେବେଳେ ସେ ଭାବୁଥିଲ, ଯେ ଆସିବ ସେ ତାର ଘର ଆଲୁଅ କରିବ, ଆଉ ଜୀବନଟାକୁ କରିବ ଗୋଟାଏ ବଡ଼ ରୋମାନ୍ସ । ମୋଟେ ଚାଉଁଶଟା ବର୍ଷ, କାହିଁ କିଛି ତ ରହିଲା ନାହିଁ ?

ସେ ନାଲି କୋଠା ପାଖେ ଗଲାବେଳକୁ ଧନେ ଗ୍ଲାନି ହେଉଥିଲ ଧୂଳ୍ ଧୂଳ୍, ଅଖି ବୁଜୁଥିଲ ଏ କଥା ସେ କଥା । ସମ୍ବନ୍ଧ ମିଳିଲା ନାହିଁ, ଧବା ନବାକୁ ସେମାନେ ପଚାରିଲେ—ଏତେ ଟଙ୍କା, ତହିଁରେ ସୁନାଗହଣା, ବି. ଏ. ପାଶ୍ ହେଲେ ହୁଏ ।

ପଫା ତାର ମନେ ଅଛି, ସେ ଫ୍ରେଞ୍ଚିଆ ଝିଅଟି, ମଣ୍ଡରେ କୁଞ୍ଚୁକୁଞ୍ଚିଆ ବାଳ ନେଇ, ବଡ଼ ବଡ଼ ଅଖିରେ ସେ ଧନ ତା ଆଡ଼କୁ ଗୁହିଁ ଆଙ୍ଗୁଠି ଦେଖାଇ କହିଲା— "ଏଇ ?" ତା ପରେ ହସ, —ହସ - ହସ, ଝରଣା ପରି କଳକଳ ଅନର୍ଗଳ ।

"ବାବୁ ଜୋତା ମରାମତ୍ ।" ସେ କଥା ବି ତାର ମନେ ଅଛି । ମୋଟାଟା ଶାଗୁଣା ପରି ଗୁହିଁ ରହିଥିଲ ତା ଫଟା ଜୋତାକୁ । ମୋଚି ହାତରୁ ବଞ୍ଚି ବଞ୍ଚି ମାଟି ହେଲ ଏତେ ବଡ଼ ଗୋଟାଏ ଜୀବନର ଅଧ ଷ୍ଟାର ଖଣ୍ଡେ ରୋମାନ୍ସ । ଇସ୍କୁଲ୍— ପାଠପଢ଼ା - ଛୁଟି ।

ଇସ୍କୁଲ ଘଣ୍ଟା ବାଜିଲା ଯେତେବେଳକୁ, ସେତେବେଳେ ସୋର କଲଣି ଅହମ୍ମାଳ । "କି ଋପିନବାବୁ, ପାଗଟା କେମିତି ଧରିଛି ଦେଖୁଛନ୍ତି ନା ?"

"ସାର୍, ସାର, କାଲିକ ଠିକ୍ ପଢ଼ା କରି ଆଣିବ, ଆଜିକ ଆଜ୍ଞ ଓଟେନ୍ କରନ୍ତୁ ନାହିଁ ।" ହୋ ହା, ଘୋ ଘା, ଅନାଗତର ସ୍ୱପ୍ନ ରହିଲଣି କେତେ ଦୂରରେ । ଏଇ ଅଜୟବାବୁ ସାତମଙ୍ଗଳା ସାର ଥାଉଁ ଆସିଛନ୍ତି ଜଏନ୍ କରିବାକୁ । ବୁଢ଼ା ହେଇ ଗଲିଣି, ମୁଣ୍ଡଟି ବେଶ୍ ଟୋଲ୍ ଟକ୍ ଟକ୍ ଟହା, ଚାଲିଛନ୍ତି ଆପଣା ମନେ ମନେ ବହି ଗୋଛାକ କାଖରେ ଯାକି । ଏମାନଙ୍କ ଜୀବନରେ କଣ କୋଇଲି ଡାକେ ? ସ୍ୱପ୍ନ ହୁଏ ବାସ୍ତବ ? ରୋମାନ୍ସ ହୁଏ ସଫଳ ? ଛୁଆପିଲା—ଝିଅ ବାହାଘର – ଅଭାବ --

ବାଟରେ ମାଧବ ମୁହଁରେ ପୁଣି ପଶିଲା ଭୂତ । ସ୍ୱପ୍ନ—ସ୍ୱପ୍ନ—ସ୍ୱପ୍ନ । ଦିନ ଦିଟା ପରେ "ଶ୍ରୀମତୀ" ଡାକ ହୁଏ "ହଇ ହୋ ।"

'ହଇ ହୋ' 'ହଇ ହୋ' 'ହଇ ହୋ'– ସେଇଠୁ 'ଗୋବର ବୋଉ' 'ନାଥିଆ ବୋଉ' 'ମଧୁଆ ବୋଉ' ।

"ଖୋଲ ।" ଲଡକା ଆସି କବାଟ ଫିଟେଇ ଦିଏ । ସୁଖ ଦୁଃଖର ଜୀବନ ମାଡ଼ି ବସିଲେ ବନ୍ଧା ଗଳା ଉପରେ ।

"ଶ୍ରୀମତୀ !"

ଲଡ଼କା ଲମ୍ବା ଲମ୍ବା ଗୋବର୍‌ଗୋଳା ହାତରେ କବାଟ ଖୋଲିଦେଲା, ମାଧବ ଚାହିଁଲା । କେଡ଼େ ଅସନା ! ଲୁଗା ଖଣ୍ଡିକରେ ଲାଗିଛି ଗୋବରପାଣି ଛିଟା । 'ଅଜି ଏ କି ଫେସନ୍ ?'

ଲଡକା ଲମ୍ବା ଲମ୍ବା ପାନରସବୋଳା ଦାନ୍ତରେ ଟିକିଏ ହସିଦେଇ କହିଲା, "ଗୋଟିଏ ଷ୍ଟ୍ରୋଟ କର ନ୍ଲୋ—" ଲଡ଼କା ବୁଲାପଡ଼ି ଚାଲିଗଲା, ପିଠିରୁ ଲୁଗା ଖସି ପଡ଼ିଛି । ମାଧବ ଟିକିଏ ଚିଆ ରହି ଦେଖିଲା, ଅନୁଭବ କଲା, କେଡ଼େ ଦୁର୍ବଳ ।

'ଦେଖଇତ' ଆଜ ଖଟେଣ୍ଟେ ଶଠି ଆସିଛୁ ।'

ମାଧବ କଣ୍ଠରେ କାମିନ ଚାଣୁ ଚାଣୁ କହିଲ, 'କଏ ଦେଇଛ ?'

'ସଙ୍ଗାତ ଦେଇଛୁ, ସେ ତମକୁ ଲଗିଥିଲ ।'

ମାଧବ କହିଲ—'ହୁଁ ।'

ଟାଣ ମୁହଁ ସରସ କର ମାଧବ କହିଲ, 'ମୁଁ ଖଟେଣ୍ଟ ଶଠି ପାଇଛୁ ।'

'କଏ ଦେଇଛୁ ?'

"ମାଧବାବୁ, ମୋ ମୈତ୍ର, ସେ ତମ୍ଭୁକୁ ଲଗିଥିଲେ ।"

'ଆ-ଉ କଣ, ମତେ ଲଗିଥିଲେ, ଏ ଯାଇଥିଲେ ଭଲ ଲୋକ ।'

'ସଙ୍ଗାତ—ଯେ ତମକୁ ଲଗିଥିଲ—କାଲିକା କଥା ପର ଲଗୁଛୁ । ହୁଏ ତ— ।'

ଗରିବ ବାପର ଗରିବ ପୁଅ - ପାଠ—ଛୁଣ୍ଡା ଜୋତା, କାମିଜ—ବି ଏ. ପାଶ୍—ସ୍ୱପ୍ନର, କଳ୍ପନାର ମୋହ ମାଷ୍ଟ୍ରେ— "ସେ"— ଗପରେ ବାହାଦୁର, ସେ ଦନର ଲଡକା, କବ ଭବଭୂତିଙ୍କ ମୁହଁରେ ସ୍ୱପ୍ନମିଶା ଅଣ୍ଟାଡର ସୀତା ପତ୍ର-- ଅଉ ବର୍ତ୍ତମାନ ।

ଗୋବର ହାତ ଧୋଇ ଲତକା ବାଡ଼ିଲ ଜଳଖିଆ । ଏଇ ହାତକୁ ଧର ସେ ମୁହଁରେ, ତାର ସବୁ ଅନୁଭୂତି ତାଳଦବ ସେ

ଚମ୍ପନ ଭିତରେ ଏଇ ହାତ ଉପରେ, ଯେଉଁ ହାତ ଗୋବର ଘାଣ୍ଟେ, ମଇଳା ବାଟେ, ଚୁଲି ପାରେ, ଘିମିର ମାରେ, ବାସନ ମାଜେ, ଯେଉଁ ହାତ ବୁଲିମାକୁ ଶ୍ୱାସ ଧରେ ।

ବନ୍ଧନ ! ବନ୍ଧନ ଭାଙ୍ଗିବାକୁ ଇଚ୍ଛା ହେଉଛି ଖୋଲଅଣା, ମନର ତଳେ ତଳେ । ବେଳେ ବେଳେ ଏସବୁ ମତ ସେ ଭାବେ, ଇଂଲଣ୍ଡ ଦେଶର ନାରୀ, ରୁଷ ଦେଶର ବିବାହ । ସେ ପାଖରୁ ଆସେ ଯୁଗ ଯୁଗର ପାଟି, ବାପା ଅଜା, ପଣଜା ଧର୍ମ, ସେମାନେ କଣ ଭାବିଥିଲେ ବନ୍ଧନ ବୋଲି ? ସେମାନେ କ'ଣ ଭାବିଥିଲେ ତରୁଣର ଧର୍ମ ସବୁ ଦିନେ ପ୍ରଜାପତିର ?

ଲତିକା ଜଳଖିଆ ଆଣି ଥୋଇଲା । ମାଧବ ତାଙ୍କୁ କହିଲା ଚମକି ବସିଲା ଖାଇବାକୁ—"ସେମାନେ କଣ ଭାବିଥିବେ ଏଇଟା ବୋଝ, ମିତ ? ପ୍ରଜାପତି ପରି ଖୋଲା ସ୍ୱାଧୀନ, ଭିଁଅର ?"

"ଏତିକରେ କଣ ସରିଲା ? ଆଉ ଖଣ୍ଡେ ବୁଡ଼ାଚକୁଳି ଦିଏଁ —ହିଁ, ଏଇ ଖଣ୍ଡିକ ଖାଅ ।' ବଡ଼ ବଡ଼ ଆଖିରେ ଲତିକା ଚାହିଁ ରହିଲା ।

"ମୁଣ୍ଡବାଳ ଗୁଡ଼ାକ ଠିକ୍ କଣ୍ଟା ସିଝୁପରି ଉଠିଛି ଯେ" ! ଲତିକା ସ୍ୱାମୀ ମୁଣ୍ଡରେ ହାତ ବୁଲେଇଲା । ମୁଣ୍ଡ, ବେକ, ଧୀରେ ଧୀରେ ତଳକୁ । "ଖା, ଖା, ଆଁ କର ଚାହିଁବ ପଛେ ।" ଲତିକା ହସିଲା ।

ମାଧବ ଦେଖିଲା, ହାଣ୍ଡିକଳାର ସ୍ପଷ୍ଟ ଛାପା ମରିଛି ଯେଉଁ ମୁହଁରେ, ତା ଉପରକୁ ଟ୍ରେଙ୍କଟ ଟ୍ରେଙ୍କଟ କେତେ ବୁଦା ଝାଳ ଆଉ କେତେଏ ସରୁ ସରୁ ଟିକି ଟିକି ଅଲଗା ଚୂନ ଚୂନ ବାଳ ।

"ବଇଚନ ? ଭୁଲ, ବାଜେ କଥା । ଇସ୍କୁଲ ଗଳ୍ପବେଳକୁ ପଛରେ ଚାହିଁ ରହିବ କଏ ? ଅଧବାଟରୁ କାହାର ସ୍କୁଲ ପାଉଛି ଆଣେ ?" ମାଧବ ଭାବିଲା ।

"କହୁଚ କାମ ବାକି" ଲଡ଼କା କହିଲା, "ବୁଲାପା ଆସି ନାହାଁ, ବାସନ ମଜା ହବ, ସଜାକୁ ଏଡ଼େ ବେଳଯାଏ ପଢ଼ଉଛି ଚେଙ୍କେଟା, ମାଷ୍ଟ୍ର ବସିଛନ୍ତି ।" "ହଁ, କରସିନ ତେଲ ଅଧପଣ୍ଟେ, ଗୁଆଗୁଣ୍ଡି ଆଣିବ । ଲୁଣ ଅଛି, ଶୁଖୁଆ ଆଣିମ, ଏଁ ? ଜାଗା ? ମୋର ସେ ଚଳ୍ପ ଶାଢ଼ୀଟା ନେଇ ଯା, ଧଡ଼ି ଅଛି ? ଥାଉ, କଏ ଦେଖୁଚ ?"

"ତା ପରେ ନେଇଇବ ଶୁଣ, ପିଆଜ ଅଣିବ"—ଲଡ଼କା ପଛରୁ ଡାକ କହିଲା, ଟେଁ ଟେଁ କରି ।

"କି ଜଞ୍ଜାଳ" ମାଧବ କହିଲା "ଏକାଥରକେ କହ ନାହିଁ, ଅଇଗୁ ଇସ୍କୁଲରୁ ଆସୁ ଆସୁ—"

ଲଡ଼କା ଚାହିଁ ରହିଲା ପଛେ ପଛେ । ରାସ୍ତା ଉପରେ କେତେ ଲୋକ ଚାଲିଯାନ୍ତି—ମୋଟା ସରୁ ସୁନ୍ଦର ଅସୁନ୍ଦର । ଗେଦଖା ଗଉଡ଼ୁଣୀ ଯାଏ ଶିକାରେ ହାଣ୍ଡୀ ଓହଳେଇ । "ଟ୍ରୁ ଅ ଦହି ରଖିବ କି, ଭଲ ଦହି, ନାଇଁ ଗୋ, ତମକୁ ପାଣି ଦହି ଠକିବ !" ପଞ୍ଝାକୁ ପଞ୍ଝା ଟୋକା ଚାଲିଲେ ସାଇକଲରେ, ପାଟି ଗୋଳ. ଡରଂ ଡରଂ ଅଖି, ବେକ ଖୋଲା, ସାଇକଲ ପଛରେ ବହି ବନ୍ଧା । କେଡ଼େ ବଡ଼ ବଡ଼ ନଣ ସେ "ଚନାଚୂରଗରମ" ପଗଡ଼ିବାଲା ବୁଢ଼ାଟ, ଆଜ ସେ ବାବୁଟି, କେଡ଼େ ସୁନ୍ଦର ଚେହେରା, ଏ ବାଟେ ନିତ ଯାଏ, ସିଧା ଅଖି, ବେଳେ ବେଳେ ଆଡ଼େଇ ଆଡ଼େଇ ଚାହେଁ କଣ ସେମିତ ଖୋଜୁଛି ।

"ବନ୍ଧନ !" ଲଡ଼କା ଗର୍ଜେ, "ନିଜର ଚିନ୍ତା ନିଜକୁ ବିଶ୍ୱାସ ଲାଗେ ନାହିଁ ! ଶାସ୍ତ୍ର, ଗୁରୁଜନ, ସଙ୍ଗ ।" ଜୋର କରି ଦୀର୍ଘଶ୍ୱାସ ଟାଣି ଆଣେ, ଘର୍ଘନଶ୍ୱାସ ଉପରେ, "ତାଙ୍କ ଲୁଗାଟା ପୁଣି ଚୋଳା ହବ । କୋଉଠୁ ଏ ଦାଗ ଲଗାନ୍ତି ଯେ କାଚି କାଚି ମୋତେ ଛାଡ଼େ ନାହିଁ !"

ଗଡ଼ରେ ଗଲୁଁ ହାତରେ ଧରି ମାଧବ ଦ୍ୱେଟମଥାରେ ନିଲ୍‌ଟଣ ପାଖେ ବସିଥିବଲା, କଣ ଲେଖିବ ? "ସେଉଠୁ, ସେଉଠୁ"— ଆଃ ! କଣ ଯେ ଏଗୁଡ଼ାକ ଲେଖିନି । ଲଡ଼କା ଶୁଙ୍ଖୁଆ ବାଛୁ ବାଛୁ ପଚାରିଲା, "ବାଇଗଣ ସେର କେତେ ହେଇଚି ?" "ଗ୍ରେଟ ମାଛ ପାଇଲ ନାହିଁ ?" "ଏ ଖଡ଼ା ଖାରିଆ ନୁହେଁ ତ ?" ଗୋଟିକି ଗୋଟି ପରିବାର ଦରଦାମ, ଅବସ୍ଥା, ଭଲ ମନ୍ଦ ଖୋଳା ତାଡ଼ି ପଚାରିଲା ।

ମାଧବ ମନକୁ ମନ କହିଲା, "ହାହାକାରରେ ଚିନ୍ତନ – ସେଉଠୁ ? ସେଉଠୁ ?"

"ହିଁ, କହିଲ ନାହିଁ ? ନ କହ । ବାଇଗଣ ସେର କେତେ ? ମୂଳା ପଡ଼ିଲଣି ? କେତେ କେତେ ମୂଳା ? ଏଠିକି ଯୋଉ ପରିବାବାଲି ଆସେ, ତାକୁ ଦେଖିଥିଲ ?"

ମାଧବ ବିରକ୍ତ ହେଲା. "କାହିଁ ଖାଲି ଗୋଲମାଲ କରୁଛ ?"

"କଣ ହେଲା କି ?" ଲଡ଼କୋ ହସିଉଠିଲା । ପଡ଼ିଲା ଛତରେ ଟବଗର ନାଚର ତାଳେ ତାଳେ ।

"ଦେଖ ମୁଁ ଗପ ଲେଖୁଛି, ଘରୁ ଉପ୍ରୁ କୁହେ କରୁନ ଗୋଲମାଲ । କିଛୁ ମନେ ପଡ଼ୁ ନାହିଁ ।"

"ଘର ଗପ ତ ! ଆମ ଗାଁ 'ବାପ୍ପାଓଝଂ'କୁ ଦେଖିଚ ? ଯୋଉ ଥର କହୁଥିଲ ଆମ ଗାଁର ଜଣେ କଏ ହାତେ ଲମ୍ବର ଓଢ଼ଣା ପକେଇ ଦାନ୍ତ ଚୁପି ଫସ ଫସ କରି କହିଲେ, 'ଜୁଆଁଇଁ' ଯେ ଦାଣ୍ଡକୁ ବୋଲି ଶୁଝିନ୍ତି । ଦିନକୁ ପଚଶି ଘଣ୍ଟା ଗପି ପାରେ ସେ । ଗପରେ କି ଲଭ ? କେତେ ଲେକ ଗଦା ହୋଇ ଶୁଣନ୍ତି— କି ଲଭ ଥାଏ ତା ଜଜର ? ଟୋ ଛଡ଼ା ଛିକଏ ଧୋଉଲକୁ ନେଇ ଗୃଲନ୍ତି କି ?" ଲଡ଼କା ହସ ଭିତରେ ପଚୁଷ ବରଷର କଟସ ବୁଢ଼ୀ ପରି କହିଲ ।

"ଆଃ—ମନା କରୁଛି" ମାଧବ ଉଚ୍ଛନ ହେଲି । ଲଡ଼କା କଣ ଭୁନ ହେବା ଜନୁ ? "କାହିଁ ଏତେ ଭବୁଛ ? ଦୁନଆର କେତେ ଲେକ, କେତେ ଜନଷ, ସମସ୍ତଙ୍କର ଗପ । ଲେଖ ଆଜ ମେର ଛଠି ଆସିଛୁ, ବଲେଇଝା ଗୋଝ.ଏ ହାଣ୍ଡି ଗଡ଼େଇ ଘାଙ୍ଗି ଛୁ । ଲେଖ ବଜାରରେ ଅଜ କଣ କଣ ଦେଖିଲ । ଲେଖ କଉଣ କେମିତ ଗୋଗୋଛ ବାଡ଼ଆ କରେ । ସେ ଝୋକା ବକଝକୁ ସେ 'ହଗ୍ରା'କୁ । ଲେଖ ଗଜଉଣ୍ଟ୍ରୀ ବୁଢ଼ୀ କେମିନ୍ତ ପାକୁଲେଇ ହୁଏ । ଲେଖ ଦନ ନାହିଁ ଅଦନ ନାହିଁ, ଭୁଁପାଁ ଚଁପାଁ ସେ ଯୋଗୀ ହଳକ କେମିତ ଦନ ଦିପହରେ ସମସ୍ତେ ଶୋଇବାକୁ ଗଲବେଳେ ଗୀତ ବୋଲନ୍ତି, ଗଧ ଆଉ ଡାମରାକାଉ ବୋବେଇଲ ପରି, ଲେଖ—"

"ସଇଲ ସଇଲ, କଛୁ ଲେଖେଇ ଦେଲ ନାହିଁ ।" ମାଧବ ଢେଇଁ ପଡ଼ ଦୁଲ୍ ଦାଲ୍ ଗୋଡ଼ କଗୁଡ ଖାତାପଚ ଯାକ ଗୃଳଲ ଆର ଘଟକୁ ।

"ହାହାକାରର ଟ୍ରନ୍ଦନ—ତା ପରେ, ହଁ ହଁ, ମନେ ପଡ଼ୁଥିଲ ତ, ଯାଃ ପୁଣି ପାଶୋର ଗଲ । ବୃଥା—"

ଖାଇସାରି ଆଗ ଶୋଇବାକୁ ଗଲ୍ ମାଧବ, ପିଣ୍ଡାରେ ଝୁଣ୍ଟିଲ ପିକଦାନଟା । "ଯେତେ ମନା କଲେ"—ମାଧବ ବିରକ୍ତିଟା ତଣ୍ଟିରେ ମାରି ଗଲା ।

ଚନ୍ଦ୍ରା—କଳ୍ପନା—ଅଧାନନ୍ଦ । ଅନ୍ଧାରରେ ହୁଇ, ଆଶାର, ରୋମାନ୍ସ ଯୁଗର ସ୍ୱପ୍ନର—ଲଜ୍ଜାର ସଙ୍ଗୀତ—ସେ କୋଠାର ସେ ଝିଅଟି—ଅପର୍ଣ୍ଣା—ଗେର୍ଲି - ଶକୁନ୍ତଳା—ଇନ୍ଦିରା—

ବାସ୍ତବିକ ତେବେ କଣ ସବୁ ସତ ଜୀବନ ଗୋଟାକ ତାର ହାହାକାରର କ୍ରନ୍ଦନ ? ଅସମାପିକା ? କେତେବେଳକେ ସ୍ୱପ୍ନ ପରି ଦେଖିଲା । ସବୁ ଦିନ ପରି ଅତି ରୁକ୍ଷବା, ଅତି ସୁଅଗୀ ନେଇ ଲଜ୍ଜା, ଦ୍ୱିତ ଝଣର ଝଣର, ଗାଲର ଠିକ୍ ଜାଗାରେ ପାନ ଖଣ୍ଡିକ ଖୋନ୍ଦା ହୋଇ ହସୁଛି । ସେଇ ନିଦ ମଳମଳ ଆଖି ଭିତରେ କାହାର ଯେମିତି ଗୋଟାଏ କୁହୁକ ।

ଧୀରେ ଧୀରେ, ଲଜ୍ଜା ଆଉଜି ଶୋଇଲା । ରକ୍ତ ମାଧବର ନାଚି ଉଠିଲା । ତା ପରେ ସେଇ ସ୍ୱପ୍ନ ଭିତରେ କେତେ କାଳର ସେ ରୁକ୍ଷବା ଦେହଟାକୁ ଯାପୁଟି ଧରି ସେ ବାସ୍ତବକୁ ହଜାଇଲା କଳ୍ପନାରେ, ମାନସୀକୁ ଅନୁଭବ କଲା ପ୍ରେୟସୀର ପ୍ରଜ୍ଞ ସ୍ପର୍ଶରେ ।

+ + + +

ସକାଳୁ ଉଠି ମାଧବ ଦେଖିଲା, ଲଜ୍ଜା ଶୋଇଛି । ଗାଲରେ ଓଠରେ ଲାଗିଛି ଶୁଖିଲା ଶୁଖିଲା ଧଳା ଧଳା ନାଲି ନାଲି କଣ । ମୁହଁ ଅତି ତେଲିଆ, ଫଣ ଫଣ, ବାଳ ଅଲରା, କେତେଏ ବାଳ ପଡ଼ିଛି ଆଖି ଉପରେ, ଦେହରୁ ଲୁଗା ଖସି ଯାଇଛି ପିଠିର ହାଡ଼ ଅଣ୍ଡାକରର ତାର ଅତି ପରିଷ୍କାର ସେ ପୋଡ଼ା ଯାଦୁର ଚିହ୍ନଟି । ହାତରୁ ଗୋଟାଏ ସ୍ଥାନ ଉପରେ, ନଖତଳେ କଳା ଦାଗ ଯାଇଛି ।

ମାଧବ ହସି ହସି ଆଉ ଥରେ ତାର ଦେହ ଉପରେ ଆଖି ଚରେଇ ଆଣିଲା, "ଆହା, ଏତିକି ହେଲେ ତ ମୋର, ଆଉ ତ ତାର କେହି ନାହିଁ, ସେ ଆଉ ମୁଁ, ମୁଁ ଆଉ ସେ ଏକା !" ଲତିକାର ଗନ୍ଧିଆ ଅଧୂଆ ଓଠରେ ଲାଗି ରହିଥିଲା ଗୋଟିଏ ତୃପ୍ତି ର ହସ । ଗୋଟିଏ କ୍ଷୀଣ ଚୁମ୍ବନରେ ସେତକ ଓଟାରି ନେଇ ମାଧବ ଗଲା ପଢ଼ାଘରକୁ । ଗଲାଦିନର ଲେଖାଟାକୁ ଟାଣି ଟାଣି ଉପରେ ହେଡ଼ଲାଇନ୍ "ଗଳ୍ପ"କୁ ତିନି ଥର କାଟି ଲେଖିଲା--

"ସଂ ଗୀ ତ"

ତଳେ ଅସମାପ୍ତ 'ହାହାକାରର ସ୍ପନ୍ଦନ' ଉତ୍ତରୁ ଲେଖିଲା :—

\+ + + +

"—ପାଇଛୁ ପାଇଛୁ ପାଇଛୁ । ସେ ମୋର ଏକା ମୁଁ ତାର ସେ ।"

ରାସ୍ତାରେ ଚାଲିଛନ୍ତି "ହାଉଆଖାଇ" ବିଦେଶିଙ୍କ ପଲ୍ଟଣ । ଦ ଜଣ; ଜଣେ ସେମେଟାମୁହାଁ ମ୍ୟାଲେରିଆ-ଅଇଁଶା ଚଷମାଦିଆ ଧୋବ ଫରଫର ବାବୁଙ୍କ ପଛେ ପଛେ ଗୋଲଗାଲିଆ ସୁକୁମାରୀଏ, ବ୍ଲାଉଜ୍ ପିନ୍ଧା, ଠକ୍ ଠକ୍, ମସ୍ ମସ୍, ହସ ହସ, ଝୁପି ଝୁପି, ଯାଅନ୍ତି । ପଛରୁ ଶୁଭୁଛି କେଁ କଣ୍ଠର—ମଇଳା ବୁଢ଼ା ଗଡ଼ ହେବ ପରା ।

ମାଧବ ପୁଣି ଭାବିଲା, "ନା—ତଥାପି—" ସ୍ୱପ୍ନରେ ବାଧା ପଡ଼ିଲା । ଲତିକା ନସର ପସର ହୋଇ ଆସି ପହଞ୍ଚିଲା; "କିଏ ଛେଲାଟା କୋଉଠି ରଖିଲ କି ହେ ଦିଅ; ଦିଅ—"

---

# ଉପର ତଳ

ବଡ଼ ସହର—

ଝକ ଝାଲ କୋଠା ଗ୍ଲାସ ଉପରେ ଧନୀର ପୁଅ ଆରାମ ଚୌକିରେ ବସି ଅଳସ ଭାଙ୍ଗେ । କମିଜର କଲର ଟିଆ କରିଦିଏ ଗରମ କୋଟ ଉପରେ ।

ଦିନ ଶେଷରେ କୁହୁଡ଼ିଆ ଆଲୁଅ ଭିତରେ ଶୀତରେ ଦେହ ଝାଲ୍ସି ଉଠେ । ବାଙ୍କ ଓଠର କଣରେ ମୁଦିପିନ୍ଧା ଆଙ୍ଗୁଠିରେ ଧନୀର ପୁଅ ଖୁନ୍ଦ ଦିଏ ଖଣ୍ଡେ ସିଗାରେଟ୍ । ଓଠରୁ ବାଙ୍କେ ବାଙ୍କେ ଉଠେ ଅଳସ ଧୂଆଁ ।

ବଡ଼ ସହର—

ଇଟା, ପଥର, କଳ-ଧୂଆଁ—ରାସ୍ତା ଫାଟେଇ ଚାଲେ ହର୍‌ରଙ୍ଗୀ ଜନତା । କାନ ଅତଡ଼ା ପକେଇ ଚାଲେ ଗାଡ଼ିର ସୁଅ ।

ଧନୀର ପୁଅ ଝରକାରେ ଚାହେଁ—ଦିନ ଶେଷର କୁହୁଡ଼ ଆକାଶକୁ ଉଠିଲାଣି ଧୂଆଁ ପରି । ଘାଉଁଶିଆ କୁହୁଡ଼ିରେ ସୁନେଲି ଆଲୁଅ । ଦୂରରେ ସାପ ପରି ସିଢ଼ି ଉଠିଛି ସୁନ୍ଦର କୋଠା ଉପରକୁ ।

କେତେ କୋଠା, ସୁନ୍ଦର ଅସୁନ୍ଦର, ନୂଆ ପୁରୁଣା; ଜଙ୍ଗଲ —କୋଠାର, ମଣିଷର । କିନ୍ତୁ ସବୁଗୁଡ଼ାକ ଗୋଟା ଗୋଟା ।

ଧର୍ମାର ପୁଅ ଉଠି ପଡ଼େ । ଆଉ ଘଣ୍ଟେ ସିଗାରେଟ୍ ଲଗାଇ ଟହଲି ଟହଲି ଯାଏ କୋଠା କତିକୁ । ଖବର କାଗଜଟା ଉପରକୁ ଟେକି ଗୁରି ଥର ହଲାଇ ଦିଏ ।

ସେ—ଦୂରରେ । ଆଉ କୋଠାରେ ଛାତ ଉପରେ କଣେଇଟି ବହିଟିଏ କୋଲରେ ରଖି ସାମ୍ନାକୁ ଆଁକିରି ଗୁହିଁ ପଢ଼ୁଛି । ଏ ପାଖେ ଖବର କାଗଜ ଦୁଇ ଥର ହଲେ, ସେ ପାଖେ କୋଲର ବହିଟି ତାର ଜବାବ ଦିଏ ।

କଅଁଳ ବାହୁଲତା ଉପରକୁ ଦୁଇ ଥର ଉଠି ପବନରେ ଦୋହଲିଲା ପରି ଦିଶେ, ହାତ କଟା ବୋଡ଼ିସ ଆଡୁଆ ତଳକୁ ଝୁଲିପଡ଼େ ।

ଧର୍ମାର ପୁଅ ନିତି ଦେଖି ଆସିଛି ସେଇ ଖେଳ; କେତେ କଳ୍ପନା ପାତିଛି, କେତେ ସପନ ଗଢ଼ିଛି ଦୂରରେ ଥିବା ସେଇ ଅଜଣା କଣେଇ ପାଇଁ । ଆଜ ତାର ମନରେ ପୂରିଛି ବିରକ୍ତି । ଧର୍ମାର ପୁଅ ମୁହ ବୁଲାଇ ଦିଏ ।

ସେ କୋଠାରେ ସାବୁଜା ଶାଢ଼ୀ ପିନ୍ଧା ପାଉଡ଼ର ମଖା ଝିଅଟି ସବୁ ଦିନପରି ଚଞ୍ଚଳ ହୋଇ ଯା ଆସ କରୁଛି । ଆଗିରେ ସେଇ ଢଳ ଢଳ ପ୍ରାଣଟଣା "ଏଠିକି ଆସ" ଗୁହାଣୀ ।

ଧର୍ମାର ପୁଅ ଫେରିଯାଏ ଆରାମ ଚୌକିକୁ । ବଡ଼ ସହଜରେ ତାକୁ ଆଜ ଲାଗେ ଏକା-ଏକା—ସହରର ମୂର୍ଖ ବ୍ୟସ୍ତତା, ରୁକ୍ଷ ବାସ୍ତବତା; ଫୁଲ-ହସ କଣେଇସବୁ ସତେ କି କର୍କଶ, ମୃତ !

ଧନୀର ପୁଅ ବସି ବସି ଭାବେ । ଗରମ କୋଟ୍‌ର ବୋତାମ ଲଗାଇ ଦିଏ । ବସି ବସି ଉପରକୁ ଚାହିଁ ଭାବେ । ତଳ ଉପରର ଟମେଲ ପସଟକୁ ଚାହିଁ ଭାବେ । ନଗ୍ନତା,— ନୂତନତା ପାଇଁ ମନ ଭିତର ଆଗ୍ରହ ଜନ୍ମ କରେ । ବଡ଼ ସହରର ନିର୍ଲଜ୍ଜ ଆବରଣ— ବ୍ୟବସାୟୀ ସାଲିସ ଆବରଣ, ପାଉଡ଼ର-ବୋଳା ଗାଲ ଅଉ ଲିପଷ୍ଟିକ ନେସା ଫଟା ଓଠ ପର ଆଡ଼ମ୍ବର ମନକୁ ଭୁଲାଇ ପାରେ ନାହିଁ ।

ଧନୀର ପୁଅ ଉଠିପଡ଼େ । ଚହଲି ଚହଲି ଯାଏ ଘରର ବାଉଁ ପାଖକୁ । ଝୁଙ୍କିପଡ଼ ତଳକୁ ଚାହେଁ—ତିନି ତାଲା କୋଠାର ଛାତ ଉପରୁ ।

ହରୁଣା ଘର—ଗରିବ ଲୋକଙ୍କ ବସ୍ତି—ଅସନା, ହତଶ୍ରୀ, ଲଙ୍ଗଳା ।

ଧନୀର ପୁଅ ଝୁଙ୍କି ପଡ଼ ଚାହେଁ, ଜଳନ୍ତା ସିଗାରେଟ୍‌ଟାକୁ ଆଙ୍ଗୁଠିରେ ଧରି ଚାହେଁ, ତିନି ତାଲା ତଳର ନଗ୍ନ ଦରିଦ୍ରତାକୁ— ଯେଉଁଠି ଗୋଟାଏ ସିଗାରେଟ୍ ଦାମ ଅଭାବରୁ କେବେ ହାହାକାର ପଡ଼େ, ଯେଉଁଠି ତିନି କଳ ପାନଛେଚାର ସମତୁଲ ହେବ ତିନି ମୁଠା ମଣିଷ ମୁହଁର ଭାତ ।

ଉପରର କଲେଇକରା ଘୋରତେଇ ଘୋରତେଇ ଆଡ଼ମ୍ବରରେ ବିରକ୍ତ ହୋଇ ଧନୀର ପୁଅ ଖୋଜେ ବୈଚିତ୍ର୍ୟ । ଧନୀର ପୁଅ ଚାହିଁ ରହେ ।

ଏବେ ଆକାଶୀ କୋଠାର ବାଡ଼ କଢ଼ରେ ଛପି ଛପି ଯେଉଁଠି ଅନ୍ଧାରରେ ଅଧିଏ ଦିନ ଶେଷର ଆଲୁଅ ପଡ଼ୁଛି, ସେଠି

ଆଖି ଲଗି ରହେ । ମୁଣ୍ଡରେ କଳା ବେଣୀ, ଯୌବନର ଜୁଆର ଆ ମୁହଁରେ ଦରିଦ୍ରତାର ଅନ୍ଧାର । ଷ୍ଟେଶନ ଅଗଣାର ସାମ୍ନା ଘରୁ ଦିଶୁଛି ଚଳନ୍ତ ଦୁଇଟି ଗୋଡ଼, ଛିଣ୍ଡା କମ୍ବଳରୁ ଓହଳିଥିବା କାନ, ଫାଳେ ବଡ଼ ଶାଢ଼ିର ଅଗ ।

ଧନୀର ପୁଅ ସମ୍ଭାଳି ପାରେ ନାହିଁ, କଞ୍ଚା ମଣିଷ ମାଉଁସର ମୋହ, ଖୋଲା ଜୁଆରର ମୋହ । ଗୁହାଁ ରହେ । ଚଳେ ଗ୍ଲାସ ଉଠେ ପଡ଼େ । ମଇଳା ଆଲୁଅରେ ମଉଳା ଚନ୍ଦ୍ରାରେ ଝିଅଟି ହାତରେ ଗାଲ ରଖି ଭାବେ । ସାମ୍ନାଘରର ଚଳନ୍ତ କମ୍ବଳ ସିଧା ହୁଏ । ଦୁଆର ମୁହଁରେ ଠିଆ ହୁଏ ଗୋଟିଏ ବୁଢ଼ୀ ।

ବୁଢ଼ୀ ଗାଳିଦିଏ । ଝିଅଟି ଝଳ ଝଳ ଗୁହାଣୀରେ ଚାହେଁ । ତା'ପରେ କାନ୍ଦେ—ତାର ମଇଳା ପଣତରେ ଲୁହ ପୋଛେ ।

\+ \+ \+ \+

ଅନ୍ଧାର ପଡ଼େ । ଧନୀର ପୁଅ ସାମ୍ନାକୁ ସିଧା ଚାହେଁ । ବଡ଼ ସହର ! ହଠାତ୍ ସବୁ ଜ ଅନ୍ଧାରରେ ବାଗୁଲି ହୋଇ ଉଠେ । କୁହୁଡ଼ିରେ ଠାଏ ଠାଏ ଗୁଡ଼ ଗୁଡ଼ ଭାସେ ଗୋଟିଏ ଗୋଟିଏ ବିଜୁଳି ଆଲୁଅ ।

ରାତ—ବଡ଼ ସହରରେ ଶୀତଦିନର ରାତ ।

ଚଳେ –

ଯେଉଁଠି ବାହାରର ଅନ୍ଧାରକୁ ଉପହାସ କରି ଆସନ୍ତ ପାଉଛି ଅସାର ଜୀବନର ବ୍ୟଥିତ ବ୍ୟର୍ଥତା ।

ଯେଉଁଠି ମଉଜ ସହରର ରେଡ଼ିଓ କଲବାଜଣା ଆଉ କଳାଭବନକୁ ବଦ୍ନାମ କରୁଛି ନଗରର ବୁକୁଫଟା ହାହାକାର ।

ଯେଉଁଠି ଧନିକ ପୁଅର ବେମାନ୍ସ-ଦୋହଲା ତୋଫାଙ୍ଗ ଘୁଣ୍ଟିକୁ ଧକ୍କର କରୁଛି ଗରିବର ମିଞ୍ଜି ମିଞ୍ଜି ତ୍ରାଣ-ପ୍ରବଣତାର ମୋହ ।

ତଳେ —

ଯେଉଁଠି ମୋଟା ବାଚସ୍ପତିଙ୍କ ଲମ୍ବା ଚଉଡ଼ା ବକ୍ତୃତା ଜପୁଜାଇ ପାରେ ନାହିଁ ସାମାନ୍ୟ ଦୁଇ ଗୁଣ୍ଡା ଭାତ । ଯେଉଁଠି ବିଶ୍ୱବିଦ୍ୟାଳୟର ଲକ୍ଷ ଲକ୍ଷ ଶାସ୍ତ୍ର ନିଭାଇ ପାରେ ନାହିଁ ଭୋକିଲା ପେଟର ନିଆଁ । ଯେଉଁଠି ମଠର ଗାଢ଼ ଫୋପାଡ଼ ଫୋପଡ଼ ଘୂଳେ ଭୋଗର ବାଜାଣୁ ମିଶା ଧୂଆଁ, କିନ୍ତୁ ଅଟକ ରହେ ନାହିଁ ।

ସେଇ ତଳେ—

ଅନ୍ଧାରରେ ଶୃନଶାନ ଦୁଇ ଜଣ । ଟୋକାଟା ମୁହଁପୋତି କାନ୍ଦେ । ବୁଢ଼ୀ ବୁଝାଏ, ସାକୁଳାଏ, ମଝିରେ ମଝିରେ କାଶେ ।

“ଗରିବର ପୁଣି ଦମାକ ।”

ଦିନ ଦିନ ବୁଝାଇଲି, ରାତି ରାତି ବୁଝାଇଲି, କାନେ କାନେ ବୁଝାଇଲି; ତଥାପି ତୋର ଅଣ୍ଟ ଛୁଡ଼ିଲୁ ନାହିଁ । ଆମେ ଭୋକରେ ମରୁଛୁଁ, ଶୀତରେ ଥରୁଛୁଁ । ତଥାପି ।

‘ସେ’ ବାରମ୍ବାର ଆସି ଫେରିଗଲା, ଭୁକ କାମୁଡ଼ ଗୋଡ଼ାଇ ଛଡ଼ିଦେଲୁ । ଆମେ ଭୋକରେ ମରୁଛୁଁ !

କେତେଦିନ ତୋର ଭୁକା କାମୁଡ଼ା ଆଉ ନାଲି ଆଖି ଦେଖି ସୁଦ୍ଧା ‘ସେ’ ତୋ ଗୋଡ଼ରେ ଗୁରେଇ ଭୁରେଇ ହେବାକୁ ଆସୁଥିବ ?

ତୋର ଝମାଳ ପିଣ୍ଡ ବସି ଥା । ଆମେ ଶୋକରେ ମରୁଁ । ତୋର ଭଲ ନାଁକୁ ପଣତରେ ବାନ୍ଧ ଅଣ୍ଟାରେ ଖୋସି ବସି ଥା ।

ତୋର ରୂପ—ତୋର ବଇସ—କିଏ ତାକୁ ପେଜ ପାଣିରେ ବଢ଼ାଇଲା ? କାହା ପାଇଁ ତୋର ଗଣ୍ଡି ଦିନୁ ଦିନ ଫୁଲି ଉଠିଲା ଆଜି ଆଜ ଅଭାବରେ ଜଳପୋଡ଼ ଗଲାବେଳେ ତୁ ଆଉ ଆଖିରେ ଦିଶୁଁ ନାହୁଁ । ପାଇଲା ଧନ ଗୋଡ଼ରେ ଠେଲୁଚୁ । ସବୁକୁ, ବଞ୍ଚି ରହିବାଠୁଁ ବେଶି ବଡ଼ ତୋର ଭଲ ନାଆଁ, ତୋର ସତୀପଣ, ତୋର ମନର ରୁଚି । ନୁହେଁ ?

ଆରେ, କିଏ ଚଟେ ହାଣ୍ଡିରେ ପୂରେଇ ପାଣ୍ଡିକୁ ନଉଛି— କିଏ ଗଛତଳ ଘର ଭର୍ତ୍ତି କରିବ ? କୋଉଠି ଦେଖୁଚୁ ଉପାସିଆ ଗରିବ ଘରେ ତୋର ପରି ଆଣ୍ଠୁ ବାନ୍ଧି ବସିଛନ୍ତି ?

ଧିଅରୁ ପୂଜାଏ ଯାନ୍ତା ନାହିଁ, ପେଟକୁ ଦାନା ମିଳନ୍ତା ! ନୋହିଲା ବା ତୋର ବଡ଼ପଣ, ନୋହିଲା ବା ତୋ ଭଲ ନାଆଁ, ଆଜିକ ବଞ୍ଚିଲେ କାଲିକା କଥା ।

ଶୁଖିଲାକୁ ଦଇବ କାହିଁକି ଟଟେ ବୁଢ଼ୀଟାକୁ କଲବଲ ଦେଖିବାକୁ ବଞ୍ଚେଇ ରଖିଛି ? ବୈଶିଆ ତ ଜେଲରେ ଘଣ୍ଟାପେଳା ହୋଟପୋଟ ଦି ମୁଠା ପାଉଥିବ ।

ବୁଢ଼ୀ କାଶି କାଶି କହେ । ଟୋକାଟା ଲୁହରେ ଭସାଇଦିଏ ।

\+ \+ \+

କେତେବେଳକେ ।

କବାଟରେ କିଏ ହାତ ମାରେ । ବୁଢ଼ୀ ଟୋକା ପାଖକୁ ଆସି କେତେ ହାତ ଓଠ ଧରେ, କେତେ ନେହୁରା ହୁଏ; ତା ପରେ

କବାଟ ପାଖକୁ ଯାଏ । କେତେ ବୁଝାଇ କହେ । ତା ପରେ କେଉଁ କଣରେ ଛୁଣ୍ଡା କମ୍ବଳ ତଳେ ଅଦୃଶ୍ୟ ହୋଇଯାଏ; ଖାଲି ବେଳେ ବେଳେ ଶୁଭେ ଗୋଟାଏ ଛୋଟାଏ କୁଙ୍ଗିଲ ଅଛୁଣ୍ଡା କାଶ ।

ଚୋଖଟା ଟାଣ ବାନ୍ଧ ଠିଆ ରହେ । ମୁହଁକୁ ରଗଡ଼ ରଗଡ଼ ପୋଛେ, ପୁଣି କାଢ ପକାଏ । କୁହୁଡ଼ିଆ ଅନ୍ଧାର ଘରରେ ମନ ଭିତରର ହ୍ୱମକାକର ଆଉ ବାହାରର ଶୀତରେ ଠିଆ ହୋଇ ବରଡ଼ାପତ ପର ଥରେ ।

"ସେ"—

ତା ପରେ ଟାଣ ଟାଣ ଚେଣ୍ଡି ଗଣ୍ଡିଆ ଦୁଇଟା ହାତ ଲୁହା-ଶିକୁଳି ପରି ତାକୁ ମକୁଡ଼ିଆ-ଚେଣ୍ଡି ଧରିଥରେ ଜବରଦସ୍ତି ବାନ୍ଧ ପକାଏ; ଲୁଚି ଗୁଣ୍ଡା କରିଦେବାକୁ ଚାହେଁ । ମୁହଁରେ ନାକରେ ଗାଲରେ ଫୋଡ଼ିହୋଇଯାଏ ଛୁଞ୍ଚ ପରି ଖଙ୍କ ଦାଢ଼ି । ଛୋପାନ ଭିତରେ ଖୁନ୍ଦିବାକୁ ସେ ଅବସର ପାଏନାହିଁ । ସବୁ ଖିଅ ତାର ଓଲଟ ପାଲଟ, ଅଡ଼ୁଆ ଛଡ଼ୁଆ ହୋଇଯାଏ ।

ତା ପରଦିନ ।

ସକାଳର କଅଁଳ ଆଲୁଅରେ ଧମାର ପୁଅ କୋଠା ଉପରେ ଫୁଲକୁଣ୍ଡ ମଝିରେ ବସି ଚାହା ଖାଏ । ତଳେ ବସ୍ତିର ଅସନାକୁ ଚାହିଁ ମୁହଁ ନେଃଫେଡ଼େ । ଫସରଫାଟି ଯାଉଥିବା କୁହୁଡ଼ି ଭିତରେ ନଦ ମଳ ମଳ କାଗଜା ସହରକୁ ଚାହିଁ ସିଗାରେଟ୍ ଫୁଙ୍କେ ।

ତା ପରେ କବରକୁ ଆସି ଉଦୁଙ୍କି ପଡ଼ ତଳକୁ ଚାହେଁ ।

ଗଳି ସଞ୍ଜାର ଝିଅଟି ଉଠି ଗାଧୋଉଛି । ମୋଟା କୋଚଡ଼ ଜନାରେ ଦଷି ରଗଡ଼ ଯାଉଛି ଶୀତରେ ଥର ଥର ଦେହ ଗୋଟା—ସତେ ଯେପରି ଫେଣ୍ଟୁ ପକାଇବାକୁ ସେ ଚାହେଁ ଗଳି

ଖଣ୍ଡ ଖଣ୍ଡ ଜନମର ମଳାଧୂଳି, ଦରିଦ୍ରତାର, ବ୍ୟର୍ଥତାର କାଳି; ରାଶି ରାଶି କଙ୍କାଳିଆ ଅନୁଭୂତିର ଆଞ୍ଚୁଡ଼ା ଦାଗ ।

ଧର୍ମର ପୁଅ ଝୁଙ୍କିପଡ଼ି ଚାହେଁ । ଗରମ କୋଟର ବୋତାମ ଦେବାକୁ ଭୁଲିଯାଏ । ଦେହର ତାତି ବଢ଼ି ବଢ଼ି ଉଠେ ।

କଞ୍ଚା ମାଉଁସର ଗନ୍ଧ । କଞ୍ଚା ମାଉଁସର ପଥର-ଚିରା କାନ-ଫଟା ଡାକ । ଛିଣ୍ଡା ଲୁଗା । ବୁନ୍ଦା ବୁନ୍ଦା ପାଣି । ଖୋଲା ଦେହ । ବଅସର ତେଜ । ସକାଳର କରପଟିଆ ଆଲୁଅ । ମୁକୁଳା ବେଣୀ । କଞ୍ଚା ମାଉଁସର ଡାକ ।

ହଠାତ୍ ଝିଅଟି ଉପରକୁ ଚାହେଁ । ତାର ମୁହଁଗୋଟା ଲାଲ ପଡ଼ିଯାଏ । ତରତରରେ ଲୁଗାପଟା ସମ୍ଭାଳି ସଜାଡ଼ି ଦିଏ । ଗରିବର ମାଉଁସ ପିଣ୍ଡୁଳା ଭିତରେ ଧନୀକର ଶାଣଦିଆ ( exploiting ) ଆଖି ତାକୁ ଅସ୍ଥିର କରି ପକାଏ । ମଜୁରିଆ ପାଖରେ ଯାହା ସେ ହରେଇଛି, ତିନି ତାଲର ଧନୀକ ପାଖରେ ତାକୁ ସେ ଉଦ୍ଧାର କରି ବାଘୁଣୀ ପରି ଉପରକୁ ଚାହେଁ । ଓଦା ସର ସର ହୋଇ ସିଏ ଚାଲିଯାଏ ସନ୍ତସନ୍ତିଆ ବଖରା ଭିତରକୁ ।

ଧର୍ମର ପୁଅ ମୁହଁକୁ ପୁଣି ଉପରକୁ ଟେକି ଫେରିଆସେ । ସିଗାରେଟ୍ ଟାଏ ମୁହଁରେ ଭୁଷିଦେଇ ଦିଆସିଲି ମାରିବାକୁ ଭୁଲିଯାଏ ।

ଧର୍ମର ପୁଅ ଏକ୍ଲା ହୋଇ ସାମ୍ନାକୁ ଚାହେଁ, ଯେଉଁଠି ସେ ବଡ଼ କୋଠାର ଝିଅଟି ଚାହା ଖାଇସାରି ବଠେଇ ବଠେଇ ବସି ଓଠରେ ରଙ୍ଗ ମାଖୁଛି ।

ବଡ଼ ସହରରେ ତହଲ ବଢ଼େ, ରାସ୍ତା ଫଟାଇ ବାଟଚାଲେ ହରଙ୍ଗୀ ଜନତା ।

— ০ —

# ବୁଢ଼ା କବି

ସବୁ ମଣିଷର ଦିନ ଆସେ, ସେତେବେଳେ ମନ ପୂରିଯାଏ କଅଁଳ ଆଦର ସଂସ୍ପର୍ଶ ଜଣାଅଧିକେ ମିଳିଥାଏ, ପଥର ତରଳି ଝରିପଡ଼ିଥାଏ, ଦୁଇ ତିନି ବୁନ୍ଦା ପାଣି ।

କିନ୍ତୁ—ଦିନ ରହେ ନାହିଁ । ଜୀବନର ମୁକୁଳା ଗତି ଫାଶ ବାନ୍ଧିଯାଏ । ଆଖି ଟେକିଲେ ଦିଶେ ଖାଲି ଦିଗନ୍ତର ମରୀଚିକା···

ଗ୍ରେଟ ଚୌକୀଟିରେ ବସି ବସି ବ୍ରଜମୋହନ ଖାଲି ଭାବନ୍ତି ସେଇ କଥା । କାଲିକାର କଥା, ଯେତେବେଳେ ସାହିତ୍ୟ କହିଲେ ଲୋକେ ବୁଝୁଥିଲେ କବି ବ୍ରଜମୋହନଙ୍କ ଲେଖା ।

କାଲିଠୁଁ ଆଜି କେତେ ଫରକ ! ସଞ୍ଜ ଗଡ଼ିଆସେ । ବଂଖିବୁ-ଚୌକୀରେ ଏକୁଟିଆଟି ବସିଥାନ୍ତି, ଖାଲି ବୁଢ଼ା କବି ବ୍ରଜମୋହନ ।

ଜୋହ୍ନା ଫୁଟେ, ସୁଲୁ ସୁଲୁ ପବନ ବହି ଆସେ, ଆକାଶର ତାରାଟି କାଲି ପରି ପୁଣି ମୁରୁକି ମୁରୁକି ହସେ, ବ୍ରଜମୋହନ ଦୁଃଖ-ଭରା ଆଖିରେ ଉପରକୁ ଚାହାନ୍ତି—"ହା—ବୃଥାରେ ସରଗ-ତରା, କବିତାର ତେଜ ପାଣି ହୋଇଯାଇଛି ଜନମ ଦୁଃଖୀର ଲୁହରେ ।

କବିତା ଆଜି ନାହିଁ, ଗୀତ ବୋଲିଲା ବେଳକୁ କଣ୍ଠରେ ସତେ କଣ ଲାଖିଯାଉଛି । ଏ ପାଖର ସଙ୍ଗୀତକୁ ଘୋଡ଼ାଇ ପକାଉଛି ସେ ପାଖର ଡାକ ।

ଝଙ୍କାରରେ ଏକୁଟିଆଟି ବସି କଣ ଭାବୁଥାନ୍ତି । ଏଇ ବଗିଚା ଟୁଙ୍ଗୀ ଜୀବନର ଆଶ୍ରୟ । ବଗିଚାରେ ଜୁହାଇ ଜୁହାଇ ଫୁଲ ଫୁଟିଯାଇଛି । ମନରେ ମଧ୍ୟ ଫୁଲ ଫୁଟିଛି ଅଗଣିତ ।

ପଦ୍ମଲ ଜୀବନରେ ଭେଟ ତା ସାଥିରେ, ଏଇ ବଗିଚାର ହଡ଼ାଳ ଗୁଳ୍ମରେ ।

ସଙ୍ଗୀତର ରୂପ ଧରି ପବନରେ ଦେହ ଦୋହଲାଇ ଦେଇ ଯେଉଁଦିନ ସେ କବିର ମନ ଭିତରେ ଝଣତ ହଲାଇ ଦେଲା, ସେ ଦିନ କବି ମଣିଲା ଶୂନ୍ୟସଂଧ୍ୟା ।

କବି ଆଜି କହୁ ଚାହେଁ ନାହିଁ, କେବଳ ଚାହିଁଥିଲା ତାର ଲଜ-ନୁଆଁ ଧାର ମୁହଁ ଉପରେ ଦ' ମୁହୂର୍ତ୍ତ ଆଖି ରଖିବାକୁ, ତାର ଚପଳ ଆଖିର ହଳଦ କୁନ୍ଦଫୁଲ ଉପରେ ଭଅଁରର ଶୋଭାକୁ ନିଭୃତରେ ଧ୍ୟାନ କରିବାକୁ, ତାର ପାଖ ପବନରେ ମନର କଳା ଅବସାଦକୁ ଉଡ଼ାଇ ଦେବାକୁ ।

ସେତିକରେ କବି ରଚିଲା ତାର ସ୍ୱପ୍ନ । ସେତିକରେ ବଢ଼ିଲା ତାର ଶିଳ୍ପ, ତାର କଳା ।

କିନ୍ତୁ—

କବି ଜାଣିପାରେ ନାହିଁ, ରାତିର ଅନ୍ଧାର ଧୀରେ ଧୀରେ ମନ ଘଟଟିକୁ ମାଡ଼ି ମାଡ଼ି ଯାଏ ।

ଜୁଆରର ତାବୁକାରେ କିଏ ବା ପଡ଼ିଲା ଯାଇ କେଉଁଠି । ଜାଣିଲେ ବା ସେ ପ୍ରେୟସୀ !

ପଦ୍ମଲ ତାବୁକାରେ ସଙ୍ଗୀତ ବାହାରିଲା । କିନ୍ତୁ ଶାନ୍ତ ମିଳନାହିଁ । ତାର ତତଲା ଲୁହ ହୋଇଛି ଅନ୍ୟମାନଙ୍କର ଚନ୍ଦନ ; କିନ୍ତୁ ତାର ନିଜର ଚନ୍ଦନ ହୋଇ ପାରିନାହିଁ ।... ...

ଚନ୍ଦ୍ରାର ଲହଡ଼ୀ ଦୁଇ କୂଳ ଖାଇ ଘରକୁ ଲେଉଟିଯାଏ ।

ହଠାତ୍ କାହାର କଅଁଳ ପରଶ ପାଇ କବି ଚମକି ପଡ଼ିଲେ ।

ଠିକ୍ ସେଇ ! ସତେ ଯେପରି ବର୍ଷ ବର୍ଷର କୁହୁଡ଼ି ଗଲା କଟି । ତା ପରେ କାନରେ ସୁନ ଗୋଟିକ ବାନ୍ଧି ଅଣ୍ଟାରେ ହାତ ଦେଇ ଆଉ ହାତରେ ତାଙ୍କର ମନକୁ ବାନ୍ଧିଧରି ଠିଆ ହୋଇ କହିଲା, "ଆସ, ରାତି ହେଲାଣି ।"

କିନ୍ତୁ ଏ ତାର, ସେ—ନୁହେଁ । ତାର ମଣିଷ ଉପରେ ଏତେ ବଦଳର ଘାସ !

ପ୍ରଥମ ତୋଫାନ ପରେ ସେ ଆସିଥିଲା, କବିର ପ୍ରେୟସୀ ହୋଇ ନୁହେଁ, କୂଳର ବୋହୂ ହୋଇ । କବି ଭାବିଥିଲେ, ମନର ଯେଉଁ ଫାଟ ହୋଇ ଯାଇଛି, ତା ଆଉ ଯୋଡ଼ିବ ନାହିଁ । ତେଣୁ ଅବଶ ଦୁଃଖରେ, ଅଧେ ଘର ଉପରେ ଅଭିମାନ କରି ନିଜ ସବୁ କଳକୁ ଭିତରକୁ ଟାଣି ନେଇଥିଲେ । ଆଉ ତାକୁ ଦେଖାଇ ଦେଇଥିଲେ, ଘଟଣାର ସୁଅ ଯେଉଁ ଆଡ଼କୁ ଟାଣିବ, ସେଇ ଆଡ଼କୁ ।

କୂଳର ବୋହୂ ଆସିଲା; କିନ୍ତୁ କବି ରହିଲେ ଅଖାଡ଼ର କବିତାରେ ବୁଡ଼ି । ମନ ଅଖାଡ଼ର ପ୍ରତିଧ୍ୱନି ପରି ଦେହଟାର ଝଙ୍କାର ଖେଳି ବୁଲିଲା । ଲୋକେ ଭାବିଲେ, ବ୍ରଜମୋହନ ସ୍ତ୍ରୀକୁ ଭାରି ଭଲ ପାଏ; ନୋହିଲେ ଏ କବିତାର ଅର୍ଘ୍ୟ କାହାପାଇଁ ?

ତା ପରେ ପୁଣି କେଉଁଠି କଣ ହେଲା, କୂଳବୋହୂର ଧଇର୍ଯ୍ୟକୁ କବି ପ୍ରତିବାଦ କଲେ ନାହିଁ । ଭାବନାଟା କପରି ସାଧାରଣ ହୋଇଗଲା । ଗୋଟିକ ପରେ ଗୋଟିଏ, ଘରଟି ଝିଅ, କୂଳବୋହୂ, ବ ବୁଲିଗଲା । କବି ଚମକି ପଡ଼ି ଦେଖିଲେ, ତାର ଗଦ୍ୟମୟ ଘରକରଣା ଭିତରେ

ସେ ବି ଗୋଟାଏ କବିତା ସୃଷ୍ଟି କରିଥିଲା । ଯାହା ଆଜି ନାହିଁ, ତାହାର ସ୍ଥାନ ଆଜି ପଡ଼ିରହିଛି ଶୂନ୍ୟ । ମନ ଭିତରେ ନୂତନ କ୍ଷତ ହେଲା । ପ୍ରଥମାର ଶୋକ ହେଲା ଦୂର ଅତୀତର ବ୍ୟଥାର ସ୍ମୃତି, ଦ୍ୱିତୀୟାର ଶୋକ ହେଲା, ବ୍ୟଥା'ର ପ୍ରକାଶ ।

ତା ପରେ ଷେତଗୁଡ଼ାକ ଉପରେ ଗଡ଼ି ଗଡ଼ି ଚାଲିଯାଇଛି, ଖିଆଲ ନାହିଁ । ଲୋକେ କହୁଛନ୍ତି. ବ୍ରଜମୋହନ କାମକୁ ଅଳସୁଆ, ନିକମା । କେବଳ ନିଜର ସ୍ୱାର୍ଥ, ନିଜର ମଉଜରେ ଥାଏ; ଘରକୁ ଆଉ ଆଖିରେ ଚାହେଁ ନାହିଁ । ଲୋକେ କହୁଛନ୍ତି— ଲୋକେ··· ··

କିନ୍ତୁ— କବି ନିଜେ ବୁଝେ । କେତୋଟି ଝିଅ ଯେ କୌଣସି-ମତେ ଯିଏ ଯେଉଁଠି ପଡ଼ିଯାଇଛନ୍ତି, ଆଜି ରହିଛି ଶାନ୍ତ । ଠିକ ତାର ମା'ର ନକଲ ! ଅଜାଣତରେ ମାଆର ରୂପ ଧରି ଠିଆହୋଇ ବେଳେବେଳେ ବୁଢ଼ା କବିକୁ ଚମକାଇ ଦିଏ ।

ଏଇ ଶାନ୍ତ ଉପରେ ବ୍ରଜମୋହନ ସବୁ ନିର୍ଭର ରାଖି ଦେଇଛନ୍ତି । ସେ ତାଙ୍କର କବିତାରେ ପଣ୍ଡିତା ଶିଷ୍ୟା, ସେ ତାଙ୍କର ଶ୍ରୋତ୍ରୀ । ଶାନ୍ତ ବଢିଆସିଛି, କବିର ସଙ୍ଗୀତର ଛନ୍ଦରେ ।

ବ୍ରଜମୋହନ କହନ୍ତି, "ଶାନ୍ତ, ଦୁନିଆର ମାଛ ହାଟ ଭିତରେ ଏକା ସ୍ୱର୍ଗ ହେଉଛି କବିତା । କବି ଗରିବ; କିନ୍ତୁ କବିତା ଗରିବ ନୁହେଁ । କବି ମଣିଷ ଶିଙ୍କୁଳିରେ ପଡ଼େ, କିନ୍ତୁ କବି ପ୍ରାଣ ଶିଙ୍କୁଳିରେ ପଡ଼େ ନାହିଁ ସେସବୁ ବନ୍ଧନର ଉପରେ।"

ଶାନ୍ତ ମୁଣ୍ଡ ନୁଆଇଁ ଶୁଣିଯାଏ । ବାସଙ୍ଗ ବାଡ଼ ଉପରେ ହେନା, ମାଳତୀ ଫୁଟିବଣି, ଅନ୍ଧାର ଟିକା ମାଡ଼ି ବସିବଣି । ଅତୀତର ଅନୁଭୂତିରେ ଭିଜାଇ କବି ଭାଳିଦିଏ ଗଦ୍ୟର କବିତା । ଶାନ୍ତର ମନ ଧାଇଁ ଧାଇଁ ଚାଲିଯାଏ, କେଉଁ ଦୂରକୁ ବେଳ !

ଏଇ ଶେଷ ଆଡ଼କୁ କଟକର ପରିସ୍ଥିତିର ଅଡ଼ୁଆ ଆହୁରି ଗୋଳମାଳିଆ ହୋଇଆସିଲା । ଶାନ୍ତ – ରଜନୀଗନ୍ଧା ଫୁଲଟି ପରି ଶାନ୍ତ ! ତାର ପୁଣି ତ ଗୋଟିଏ ବର ଦରକାର । ଡେମୋଟି ଝିଅ ଯେ ଯେଉଁଠି ପଡ଼ିଛନ୍ତି, ଶାନ୍ତକୁ କାହା ହାତରେ ଟେକିଦେବ ?

ପୁଣି ଏ ଦେଶରେ ଲୋକେ ଫୁଲ ଖୋଜି ଆସନ୍ତି ନାହିଁ ; ଖୋଜନ୍ତି ମୋଟା ଡଙ୍କ । ଯାହା ଖାଇବାକୁ ରସୁଆଳ ହୋଇଥିବ । ଫୁଲଟିରେ ମନ ପୂରେ, ଡଙ୍କରେ ପୂରେ ପେଟ ।

କିନ୍ତୁ ବ୍ରଜମୋହନ ଟଙ୍କା ଦେଇପାରିବେ ନାହିଁ କିମ୍ବା ଟଙ୍କା ନ ଦେଲେ ବୋଲି ଝିଅଟିକୁ ଯେଉଁଠି ସେଠି ଦେଇପାରିବେ ନାହିଁ ।

କେତେ ଲୋକ ହିତୈଷୀ ହୋଇ କହନ୍ତି, "ସେ ଲବଙ୍ଗପାଟଣା ରମଣି ବେଶ୍ ଭଲ ପିଲା । ଗଲବର୍ଷ ଏଫେ ଷଣ୍ଡିକ ଫେଲ ହୋଇ ଅଦାଲତରେ ପ୍ରବେଶନର ହୋଇଛି......"

ସନାବୋଉଙ୍କ ମାଉସୀ ଝିଅ ଭଉଣୀର ଝିଆରୀ-ପୁଅ ନାତି, ସେ ଶ୍ୟାମ-ବାବୁଟି ଟାଟାଙ୍କର ଅଶୀ ଟଙ୍କା ଦରମା ପାଏ ଦୋହଲ ବର ହେଲେ କଣ ହେଲା, ପିଲାଟାର ଦୁଧ ଦାନ୍ତ ଭାଙ୍ଗି ନାହିଁ । ମୋଟେ ଗୋଟିଏ ବୋଲି ଟିକି ଛୁଆ

ଶାନ୍ତ – ରଜନୀଗନ୍ଧା ଫୁଲଟି ପରି ଶାନ୍ତ, ତା ପାଇଁ କିଏ ବର ହେବ ?

ବ୍ରଜମୋହନ ଭାବି ପାରନ୍ତି ନାହିଁ । ଦିନ ଗଡ଼ିଯାଏ । ଶାନ୍ତ ତାଙ୍କ ଆଖିରେ ସବୁଦିନେ ପିଲା; ସବୁଦିନେ ସେ ସେଇ । କଟକର ସେ ଆନନ୍ଦ; ତା ଯୋଗୁଁ କବ ଧନ୍ଦ ହୋଇପାରେ ନାହିଁ ।

ଥରେ ଦୁଇ ଥର ଗାଁ ଲୋକଙ୍କ କେଞ୍ଚାକେଞ୍ଚିରେ ପଡ଼ି ବ୍ରଜମୋହନ ସହରକୁ ଗଲେ । ପ୍ରଥମ ଦିନେ ଦୁଇ ଦିନ ଏ ପାଖ ସେ ପାଖ ଧାଁ-ଦଉଡ଼ କଲେ । ତା ପରେ ଚୁପ୍ ଚାପ୍ ବସି ପଡ଼ିଲେ ।

ପିଏଁ ଆକଟ କରି କହିଲେ, "ନାଗସାପ ଗଳାରେ ବାନ୍ଧିଛ, ମାଡ଼ ପଡ଼ୁନାହିଁ ?"

ବ୍ରଜମୋହନ କହିଲେ, "କଏ—ଶାନ୍ତ ନାଗ-ସାପ ?" ତା ପରେ କେବଳ ଟିକଏ ହସିଦେଲେ ।

ବହି ଦୋକାନରେ ପହଞ୍ଚି କହିଲେ, "ନୂଆ ବହି ଛପା ହେଉଛି ?"

ଜଣେ ତରୁଣ ବସି ଏଣୁ ତେଣୁ ଖାତାପତ୍ର ଓଲଟାଉଥାନ୍ତି । ଅଶ୍ରଦ୍ଧାର ହୋଇ କହିଲେ, "ନାହିଁ ।"

ପ୍ରକାଶକ ଆସିଲେ, "କି ବ୍ରଜମୋହନ ବାବୁ, ଏତେଦିନ ପରେ ଦେଖା, ପତ୍ରିକାକୁ ଲେଖା ଦେଉନାହାନ୍ତି ଆଜିକାଲି, ସେ କେବେ ଯାଇ ଲେଖୁଥିଲେ !" ବ୍ରଜମୋହନ କହିଲେ, "ମୋର ପୁରୁଣା ଲେଖାସବୁ ଏକାଠି କରି ଛାପି ଦଅନ୍ତୁ । ସବୁ ସ୍ୱପ୍ନ ଗୁଡ଼ ହେଉଛି, କିଛୁ ମିଳୁଯାଉ ।"

ପ୍ରକାଶକ ମୁହଁ ଗମ୍ଭୀର କରି କହିଲେ, "ବହି ବଜାର ବଡ଼ ମାନ୍ଦା । କିଏ ବା ଗୀତ ବହି କିଣୁଛି, ଛାପୁଛୁ ବା କେଉଁ ଆଶାରେ ? ସେତେବେଳେ କଣ ଥିଲା ବା, ଆଜିକାଲି ସମସ୍ତେ ଲେଖୁଛନ୍ତି, ପଢ଼ୁନାହାନ୍ତି କେହି ।"

ବ୍ରଜମୋହନ ଫେରିଆସିଲେ ।

ପୁଣି ପିଏଁ କଥା ପକାଇଲେ, "ଆଜିକାଲି ଅବସ୍ଥା ତ ଦେଖୁଛ, ଖାଲି ନାକରେ ତେଲ ଦେଇ ଶୋଇଲେ କଣ ଫଳ ? ବଅସ କଣ ବସିଛି ? ସେ ଖ୍ୟାତି-ଗୌରବଟି ଦୋହିଲେ ହେଲେ କଣ ହେଲା ?"

ବ୍ରଜମୋହନ କ୍ଳାନ୍ତ ହୋଇ ଶାନ୍ତିକୁ ପଚାରିବାକୁ ଗଲେ । କହିବାକୁ ଯାଉଥିଲେ, ମନକୁ ରୁଚିଲା ନାହିଁ; ହଠାତ୍ ଅଟକିଗଲେ ।

ଶାନ୍ତ ସବୁ ଶୁଣୁଥାଏ। ମୁହଁ ଟେକି ଟଳ ଟଳ ଆଖିରେ ଚାହିଁଲା, "କଣ "

ବ୍ରଜମୋହନ ବାବୁ ଦେଖିଲେ, ଗମ୍ଭୀର ଚାହାଣିରେ କେଶାଇ ରହିଛି, କଣ ଯେପରି ଗୋଟାଏ ଦୂରର ଗ୍ରାମ। ଶାନ୍ତ ଅଳ୍ପ କଷ୍ଟରେ ମୁହଁର ଭାଙ୍ଗିପଡ଼ିବା ଭଙ୍ଗୀକୁ ସମ୍ଭାଳି ନେଉଥାଏ। ଓଠକୁ ଟାଣି ନେଇ ପୁଣି ପଚାରିଲା, "କଣ ?"

ବ୍ରଜମୋହନ ତାର ପିଠିରେ ହାତ ବୁଲାଉ କହିଲେ, "ନା, —କିଛି ନାହିଁ। ମୁଁ ଭାବୁଥିଲି କି, ଏଠି ଭଲ ଲାଗୁନାହିଁ, ଚାଲ, ଆମର କାଲି ଘରକୁ ଫେରିଯିବା।"

ଶାନ୍ତ ସହରକୁ ଆସି ଦେଖିଲା, ତାର ମନଟା ସତେ ଯେ ଦୂଇ ଫାଳ ହୋଇଯାଉଛି। ଗୋଟାଏ ଅଧ ଆବୋରି ଧରିଛି ବୁଢ଼ା ବାପକୁ; ଆଉ ଅନ୍ୟଟି ଚଞ୍ଚଳ, ଟଳମଳ, ଉଡ଼ନ୍-ଉଡ଼ନ୍।

ଗାଁର ଝିଅ, ଗାଁରେ ବଢ଼ିଛି। ସହର-ଜଙ୍ଗଲ ଭିତରେ ତାକୁ ବଣୁଆ ବଣୁଆ ଲାଗେ। କଣ ଗୋଟାଏ ଅଜଣା ଭୟ ଆସି ଛାତି ଭିତର ଥରାଇ ଥରାଇ ଦିଏ; କିନ୍ତୁ ପୁଣି ତାକୁ ବେଳେ ବେଳେ ଲାଗେ ଯେ, ବଣ ଭିତରେ ଫୁଲ ଫୁଟେ। ଏତେ ଫୁଲ, ଏତେ ଦୃଶ୍ୟ, ମଣିଷ ଜାତିଟା କେଡ଼େ ସୁନ୍ଦର !

ଶାନ୍ତ ଥିଏଟର-ବାଇସ୍କୋପ ଦେଖିଗଲା। ଏଠିକୁ ସେଠିକୁ ବୁଲିଗଲା। କିନ୍ତୁ ବୁଲିଗଲେ ତାକୁ ଭଲ ଲାଗେ ନାହିଁ। କାରଣ ଲୋକେ ଅକାରଣଟାରେ ସହାନୁଭୂତି ଦେଖାଇ କହନ୍ତି, "ଆହା ! କେଡ଼େ ସୁନ୍ଦର ଲକ୍ଷ୍ମୀଟି ପରି ପିଲାଟି, କଣ ହେବ ଆହା !"

ସମସ୍ତେ କହନ୍ତି, "କାହା ଘର ଆଲୁଅ କରିବ କେଜାଣି— କର୍ମ କେବେ ଫିଟିବ।"

କିନ୍ତୁ ସମସ୍ତେ ବୁଝନ୍ତି. ଗରିବର କର୍ମ ଫିଟିବ ନାହିଁ, ଗରିବର

କର୍ମ ଫିଟ ଲିବାଠୁ ବଳ ମୂର୍ଖତା ଓ ଧୃଷ୍ଟତା ଆଉ ନାହିଁ ।

ତେଣୁ ଶାନ୍ତି କାହାର ଘର ଆଲୁଅ କରି ଗଲ ନାହିଁ; ବାପର ଗୃହର କାନ୍ଥ ଧ୍ୱସି ଭଙ୍ଗିଗଲ ।

ବ୍ରଜମୋହନ ପଡ଼ାକୁ ବାହାରନ୍ତି । ସହରର ରାସ୍ତାଏ ରାସ୍ତାଏ ପଡ଼ୁଥାଏ ସାହିତ୍ୟ ଚର୍ଚ୍ଚାର ଜୁଆର ।

ନଆ ନୂଆ ଟୋକା, ଚିକ୍ ଚିକ୍ ମୁହଁ, ଢୁଳୁଢୁଳୁ ଆଖି । ନୂଆ ସାହିତ୍ୟକମାନେ ପୁରୁଣାମାନଙ୍କ କଥା ଆଦୌ ଭାବନ୍ତି ନାହିଁ । ସେମାନେ ନୂଆ ସ୍ରଷ୍ଟା; ପୃଥିବୀ ସେମାନଙ୍କର ।

ଥରେ ଦୁଇ ଥର ନିଜର ନାଁ ବ୍ରଜମୋହନଙ୍କ କାନରେ ପଡ଼େ ।

କେବେକେବେ ସଞ୍ଜପହରେ ଗୋଟିଏ ଗୋଟିଏ ଗୃହ ଗୃହ ଯାଉ ଯାଉ କୌଣସି କୌଣସି କୋଠାରୁ ଶୁଣାପଡ଼େ, ତାଙ୍କ ନିଜର ଗୀତ । ଯାହା ଲୋକେ ତାଙ୍କ ଅମଳରେ ପାଗଳ ହୋଇ ବୋଲୁଥିଲେ ।

ଏ ତରୁଣମାନେ ସମସ୍ତେ ମୂର୍ଖ ନୁହନ୍ତି—ଅଧିକାଂଶ ଶିକ୍ଷିତ । କେହି କେହି ଚିନ୍ତାଶୀଳ, କିନ୍ତୁ ସମସ୍ତେ ଉଦ୍ଧତ । ବନ୍ଧୁ ବନ୍ଧୁ ଭୂଷଣ ଏ ଔଦ୍ଧତ୍ୟ ସହିପାରନ୍ତି ନାହିଁ । କାରଣ ନିଜର ଯୌବନ ସମୟର ଔଦ୍ଧତ୍ୟକୁ ସେ ବୃଦ୍ଧ ବୟସରେ ଏ ଯୁଗର ତରୁଣଙ୍କ ଔଦ୍ଧତ୍ୟ ଉପରେ ଚପାଇ ଦେବାକୁ ଚାହାନ୍ତି । ବ୍ରଜମୋହନ ଏ ଔଦ୍ଧତ୍ୟ ଭିତରେ ଦେଖନ୍ତି, ଜାତିର ବିକାଶ ।

ତେଣୁ ହଠାତ୍ ଦିନେ ତାଙ୍କର ପରିଚୟ ହେଲ, ଇଙ୍ଗାଧର ସହିତ । ସୁନ୍ଦର, ପୁଷ୍ଟ, ଗଠନ, ସ୍ଥିର, ନମ୍ର; କିନ୍ତୁ ନମ୍ରତା ଭିତରେ ଲୁଚି ରହିଛି, ଗୋଟାଏ ଅସ୍ଥିର ପ୍ରବଳତା—ଯାହା କେବଳ କବି ହିଁ ବୁଝିପାରେ ।

ସେମାନେ ଦଳ ବାନ୍ଧି ନଈକୂଳରେ ବସି ତର୍କ କରୁଥିବେ; କେମାନେ ପ୍ରଚଳିତ ଲେଖକମାନଙ୍କର ନିନ୍ଦାବାଦ କରୁଥିଲେ । ନଈକୂଳରେ ତଳ ସର୍ବସାଧାରଣଙ୍କର । ସେଥିରେ ସମସ୍ତେ ଯୋଗ ଦେଇପାରିବେ ।

ବ୍ରଜମୋହନ କହିଲେ, "ପୁରୁଣା ଲେଖାଳଙ୍କ ବିରୁଦ୍ଧରେ ତୁମର ବିଶେଷ ଅଭିଯୋଗ କଣ ?"

ରଙ୍ଗାଧର ସ୍ଥିର ଭାବରେ ଉତ୍ତର ଦେଲା—"ଅଭିଯୋଗ ସେମାନଙ୍କ ଲେଖା ବିରୁଦ୍ଧରେ ସେତେ ନୁହେଁ, ସେମାନଙ୍କର ଆଶି-ପ୍ରଶସ୍ତି ବିରୁଦ୍ଧରେ । ନିଜର ଜୀବନର ସୂଅ ଅଟକି ରହିବା ସଙ୍ଗେ ସଙ୍ଗେ ସେମାନେ ସାହିତ୍ୟର ସୂଅ ଅଟକିଗଲା ବୋଲି ଭାବନ୍ତି । ତାଙ୍କ ଦୃଷ୍ଟି ଆଗକୁ ପଡ଼େ ନାହିଁ, ପଡ଼େ ପଛକୁ । ନିଜର ଦୁର୍ବଳ ସୃଷ୍ଟିକୁ ଆଦର୍ଶ ବୋଲି ଦେଖାଇ ସେମାନେ ନୂତନଙ୍କୁ କୁହନ୍ତି, ଏ ଯୁଗର ବିକାର ବୋଲି । ପ୍ରତିବାଦ କଲେ, କହନ୍ତି, ଆମର ଔଦ୍ଧତ୍ୟ ।

ବ୍ରଜମୋହନ କହିଲେ, "ସମସ୍ତେ କଣ ଏପରି ଭାବନ୍ତି ?"

ରଙ୍ଗାଧର କହିଲା, "ନା, ସମସ୍ତେ ନୁହନ୍ତି; ତେବେ ଏ ବୃଦ୍ଧଭୂଷଣ—ପ୍ରାଚୀନତାର ଦୁର୍ବଳତାକୁ ଅସ୍ତ୍ର କରି ବ୍ୟବହାର କରିବା ସେମାନଙ୍କର ଅର୍ବାଚୀନତା ନୁହେଁ କି ?"

କିନ୍ତୁ ରଙ୍ଗାଧରର ମନରେ ଥିଲା ଗୋଟିଏ ଶ୍ରେଷ୍ଠ ଦୁର୍ବଳତା । ସେ ହେଉଛି, କବି ବ୍ରଜମୋହନଙ୍କ ପାଇଁ । କେତେ ଲୋକ ବୁଢ଼ା ଲେଖାଳଙ୍କ ପାଖକୁ ଆସନ୍ତି । ରଙ୍ଗାଧର ସହାନୁଭୂତି ଦେଖାଏ ନାହିଁ; ସେ କବିଙ୍କ ସହିତ ସମାନ ସମାନ ମିଶିଯାଏ ।

ରଙ୍ଗାଧରର ନଜର କଣ ବିଶେଷକୁ ଥିଲା ଜଣା ନାହିଁ ; କିନ୍ତୁ ବ୍ରଜମୋହନ ଭାବିଲେ ବିଶେଷକୁ ଅଛି ବୋଲି । ରଙ୍ଗାଧର ତାଙ୍କୁ ପ୍ରଶଂସା କରେ । ତହିଁରେ ତାଙ୍କର ନଜର ଉଜ୍ଜ୍ୱଳ ପ୍ରବଣତାର ଅଜ୍ଞାତ ରଙ୍ଗ ମାଖି ତାଙ୍କ ଆଖି ଆଗରେ ଆସି ଠିଆ ହୁଏ । ମନର ଗହନ ଗହ୍ୱରବନା ଭିତରେ ଚହଳ ପଡ଼ିଯାଏ ।

ବ୍ରଜମୋହନ କହିଲେ—"ଶାନ୍ତି, ଏ ରଙ୍ଗାଧରବାବୁ ସାହିତ୍ୟିକ ।"

ବ୍ରଜମୋହନ ଅତି ଉଡ଼ାଳର ପକ୍ଷପାତୀ ନ ଥିଲେ । ରଙ୍ଗାଧର ଦେଖିଲେ ।

ଶାନ୍ତି ହମେ ବୁଝିଲା, ମଣିଷ କେବଳ ସୁନ୍ଦର ନୁହେଁ, ଶିକ୍ଷିତ, ସାହିତ୍ୟିକ ମଧ୍ୟ ।

ସଞ୍ଜପହରରେ ରଙ୍ଗାଧର ଯେତେବେଳେ ବ୍ରଜମୋହନଙ୍କ ସହିତ ବସି ବୈଠକ କରେ, ଶାନ୍ତି ପାନ ଆଣି ଥୋଇଦିଏ । ଦୁଆର ମୁହଁ ସେ ପାଖେ ଦି ଚାରି ଥର ଯିବା ଆସିବା କରି ସାରି ଚୁପ୍‌ଚାପ ଠିଆହୋଇ ଶୁଣେ ।

ପରିଚୟ ଯହିଁ ଦିନ ପରେ ଦିନ ଗଢ଼ି ଚାଲିଲା, କେହି ତହିଁରେ ଆପତ୍ତି ଦେଖିଲେ ନାହିଁ । କାରଣ ବ୍ରଜମୋହନ ସବୁଦିନେ ଏହିପରି । ଝିଅକୁ ମଧ୍ୟ ସେହିପରି ବଢ଼ାଇ ଆସିଛନ୍ତି ।

ବରଂ ପିଇସୀ ଭାବିଲେ, "କାଳେ—ଯଦି—,ଦେଖାଯାଉ, ଏମାନଙ୍କର କପାଳ !"

ରଙ୍ଗାଧରର ମନ ଭିତରେ ତୋଫାନ ଉଠୁଥାଏ ; କିନ୍ତୁ ସେ କାହାରିକୁ କିଛି କହିବାକୁ ସାହସ କରେ ନାହିଁ ।

ତା ପରେ ଦିନେ ବ୍ରଜମୋହନ ଗାଁକୁ ଚାଲିଗଲେ । ଶାନ୍ତି ଗଲାବେଳେ ଗୋଟାଏ ଦୀର୍ଘନିଃଶ୍ୱାସ ପକାଇଲା । ଗାଁର ଝିଅ ବୁଝି

ମାରିଲା ନାହିଁ, ଗାଁ ଭିତରେ ଓ ତା ଭିତରେ ଗୋଟାଏ ବାଡ଼ ପଡ଼ିଯାଇଛି ; ମନର ଦୁଇ ଫାଳରୁ ଫାଳେ ପଛରେ ଲାଗି ରହିଲାଣି ସହରରେ ।

କେତେଟା ଦିନରେ ଆପେ ଆପେ କଣ ହୋଇଯାଇଛି, କେହି ବୁଝିପାରି ନାହାନ୍ତି ।

ପୁଣି ଲୋକେ ବ୍ରଜମୋହନକୁ ଖେଞ୍ଚୁଥାନ୍ତି—"ବେକରେ ନାଗ ସାପ ବାନ୍ଧି ଥିର୍ ହୋଇ କସିଛନ୍ତି ।" ପୁଣି କବି ଗାଁର ଅବଦଳା ସ୍ଥିରତା ଭିତରେ ଚୂପ୍‌ଚାପ ପଡ଼ି ରହିଥାନ୍ତି । ପୁଣି ସଞ୍ଜବେଳେ ବଗିଚାଘରେ ପହଞ୍ଚି ଶାନ୍ତି ଡାକେ, "ରାତି ହେଲାଣି, ଆସ ।"

ତା ପରେ ଦିନେ କଲେଜର ପାଠ ଶେଷ କରି ରଙ୍ଗାଧର କବି-ପୂଜା କରିବାକୁ ଖାତା-ପତ୍ର ଧରି ଆସି ପହଞ୍ଚିଲା । ଗାଁ ଗୋହିରି ମୁଣ୍ଡରେ ପଚାରିଲା, "ବ୍ରଜମୋହନବାବୁଙ୍କ ଘରକୁ ବାଟ କାଏ ?"

ରଙ୍ଗାଧର ଦୁଇ ଦିନ ରହିଲା; ସମସ୍ତେ ଆଦର ଯତ୍ନ-କଲେ । ନିଜ ହାତରେ ରୋଷେଇ କରି ଖୁଆଇବାକୁ ଶାନ୍ତିର ଗୋଡ଼ ତଳେ ପଡ଼ୁ ନ ଥାଏ ।

ଅତୀତରେ ଏପରି ଅନେକ ଲୋକ ଆସିଛନ୍ତି, ଆଜି ଜଞ୍ଜାଳର ପ୍ରଶ୍ନ ବ୍ରଜମୋହନଙ୍କ ଘରେ ଉଠେ ନାହିଁ—ଗାଁ ଲୋକେ ଯାହା ଭାବନ୍ତୁ ପଛେ ।

ସେତେବେଳେ ନିଛାଟିଆ ଖରାବେଳ ହୋଇଥାଏ । ଗାଁ ଲୋକେ ଯେ ଯେଉଁଠି ଖିଆ ନିଦରେ ଘାରି ହେଉଥାନ୍ତି । ରଙ୍ଗାଧର ଏଣିକି ତେଣିକି ଚାହିଁ ଶାନ୍ତି ହାତକୁ ଧରିପକାଇ ଦାବିଦେଲା । ତା ପରେ ଆସ୍ତେ ଆସ୍ତେ କହିଲା, "ଶାନ୍ତି, ମୁଁ କାହିଁକି ଆସିଛି ଜାଣ ?"

ନିଜେ କଥା କହି ନିଜକୁ ତାକୁ ଦେଖିଲ ମଣି କାନ୍ଦି ଲାଗିଲା । ଶାନ୍ତ ଗୋଟାସୁଦ୍ଧା ଥରୁଥାଏ । ତାର ମୁହଁ ଉଠ ନିଚେ କ ପୋଡ଼ିଯାଉଥାଏ, ଗଳା ଶୁଖିଯାଉଥାଏ, ଛାତି ଦୁଲୁ ଦୁଲୁ ପଡ଼ୁଥାଏ ।

ଶାନ୍ତ ନଇଁ ମୁହଁକୁ ଉପରକୁ ଉଠେଇଲା । ଦୁଇ ଜଣ ପରସ୍ପରକୁ ଚାହିଁ ରହିଲେ କିଛି ସମୟ । ରଙ୍ଗାଧର ହାତ ବଢ଼ାଇ ପୁଣି ଶାନ୍ତ ହାତକୁ ଧରିଲା । ଶାନ୍ତ ଆପତ୍ତି କଲା ନାହିଁ ।

ମରବତାର ଅଛି ଭାଷା ଯାହା ଅତି ଗଭୀର, ଅତି ବ୍ୟାକୁଳ । ମରବତାର ମୋହ, ମରତ ଚରଣ ନୃତ୍ୟ— ଯହିଁରେ ସବୁ ଭୁଲିଯାଇ ରହେ ଗୋଟାଏ ସ୍ପନ୍ଦନ, ଶାନ୍ତ, ମୃଦୁଳ, ପ୍ରାଣବନ୍ତ ।

ଏହି ମରବତାର ଭିତରେ ହୋଇଗଲା ଗୋଟାଏ ପରିଚୟ । ଯାହା କଥାରେ ପ୍ରକାଶ କରି ହୋଇ ନ ଥାଏ ।

ଶାନ୍ତ ଚାଲିଗଲା । ରଙ୍ଗାଧର ଫେରିଆସିଲା, ମନରେ ସଞ୍ଚି ଗୋଟାଏ ମୁହୂର୍ତ୍ତର ମୋହ । ଶାନ୍ତର ଓଠ, ଫୁଲିଲା ଫୁଲିଲା ନାକ, ଉଜ୍ଜ୍ୱଳ ଆଖିର ବିସ୍ମୃତ ଓ ବିଭୋରତା ପରିଚୟ— ଏଗୁଡ଼ିକର ସ୍ମୃତି ଘେନି ।

ଦିନ ଗଡ଼ିଯାଏ । ଆଜି ରଙ୍ଗାଧର ଫେରିଲା ନାହିଁ । ଏଇ ଭିତରେ ଦୁଇ ଥର ସହରକୁ ଯାଇ ଫେରି ଆସିଲେ ।

ଦିନେ ଫେରି ଆସି ବ୍ରଜମୋହନ ବଡ଼ ହସ ହସ, ଖୁସି ଖୁସି ଥାଆନ୍ତି । ଝିଅ ଆଗରେ କହିଲେ, "ରଙ୍ଗାଧରଟି ଭାରି ଭଲଲୋକ । ଏପରି ଗୁଣୀ ପିଲାଟି ନିଶ୍ଚୟ ଦିନେ ଭାରି ବଡ଼ଲୋକ ହେବ ।" ଏପରି ପ୍ରଶଂସା ଶୁଣିବା ଶାନ୍ତ ପକ୍ଷରେ ନୂଆ ନୁହେଁ; କିନ୍ତୁ ରଙ୍ଗାଧର କଥା ପଡ଼ିଲେ ସେ ଯେପରି ମଉନ ହୋଇଯାଏ । ଏ କଥାଟି ବାପ କେବେ ଦେଖିବାକୁ ବା ବୁଝିବାକୁ ଚେଷ୍ଟା କରି ନ ଥିଲେ ।

ବ୍ରଜମୋହନ କହିଲେ, "ଶାନ୍ତ, ମୁଁ ବେଳାସ୍ତୁ ବୁଡ଼ା ହୋଇଯାଉଛି । ଏବୁ ବଦନେ ଯେ ବସିଥିବ, ତାର କେଉଁ ଠିକଣା ?"

ଶାନ୍ତ କହିଲ, "ବାପା, ଏପରି କାହିଁକି କହୁଛ ?"

ବ୍ରଜମୋହନ କହିଲେ, "ଶାନ୍ତ, ଆମର ସଫା ସଫା କଥାବାର୍ତ୍ତା ହେବା । ଲୋକେ ମୋତେ ବାରମ୍ବାର କହୁଛନ୍ତି, ମୁଁ ତୋର ବଡ଼ାଘର କାହିଁକି ଦେଉନାହିଁ । ମୁଁ ଭୁଲ ଲୋକ, ମୁଁ ଅଳସୁଆ, ମୁଁ ନିକମା - ଏସବୁ କଥା ଶୁଣାଅଧିକେ ମତେ ଶୁଣିବାକୁ ପଡ଼ୁଛି । ହୁଏ ତ ସତ କଥା । କାରଣ ତୋର ବୋଉ ବଞ୍ଚିଥିଲେ, କଥା ଭିନ୍ନ ରକମ ଥାନ୍ତା । ଲୋକଙ୍କ କଥାକୁ ମୁଁ କେବେ ଖାତିର କରିବାକୁ ଚେଷ୍ଟା କରି ନାହିଁ । ମୋର ସୁବିଧା ଓ ସାମର୍ଥ୍ୟ ଦେଖି ମୁଁ ମୋର ସବୁ ଦାୟିତ୍ୱ ତୁଲେଇଛି । ତୋର ଭଉଣୀମାନେ ଯେ ଯେଉଁଠି ସୁଖରେ ଅଛନ୍ତି; କିନ୍ତୁ ତୁ ଯେପରି ସେମାନଙ୍କଠୁ ନଅଲଗା । ତୋର ମନଟା ଠିକ୍ ମୋର ମନ ପରି । ତେଣୁ ତୋ ପାଇଁ ମୋତେ ଡର ମାଡ଼େ । ଦୁନିଆ ଆମକୁ ଚହ୍ନି ଶିଖି ନାହିଁ ।"

ଶାନ୍ତ କହିଲା, "ଆଜି ଏତେ କଥା କାହିଁକି କହୁଛ ବାପା ?"

ବ୍ରଜମୋହନ କହିଲେ, "ରଙ୍ଗାଧର ତୋ ପାଇଁ ପ୍ରସ୍ତାବ ପକାଇ ଚିଠି ଲେଖିଛି । ଶାନ୍ତ, ମୁଁ ପଚାରୁଛି—ତୋର ମତ କଅଣ ?"

ବ୍ରଜମୋହନ ତାର ଦୁଇ ହାତକୁ ଧରି ପକାଇ ସ୍ଥିର ହୋଇ ତାର ଆଖିକୁ ଚାହିଁ ପଚାରିଲେ, "ଶାନ୍ତ, ତୋର ମତ କଣ ? ତୋର ମା ନାହିଁ, ମୋ ପାଖରେ ସବୁ ସଫା କଥା କହ । ମୁଁ ସିଧା ସିଧା ପଚାରୁଛି, ତୁ ଯାହା କହିବୁ, ସେଇଥିରେ ମୋର ରାଜି । ଜବାବ୍ ଦେବ ?"

ଶାନ୍ତର ମୁହଁ ଉପରେ କେତେ ଭାବର ଢେଉ ଖେଳିଗଲା । ମୁହଁ ସତେ କି ପୋଡ଼ି ଯାଉଥାଏ । ସେ ମୁହଁ ହଲାଇ ସମ୍ମତି ଜଣାଇଲା । ତା ପରେ ଧୀରେ ଗୋଟିଏ ଗୋଟିଏ ଚାଲିଗଲା ।

ଚାରି ଦିନ ଆଉ ରାତି ମାତ୍ର ରହିଲା, ଗୋଟାଏ ଦିଧା ଆଉ ଦ୍ୱନ୍ଦ୍ୱରେ । ବାପା, ଘର, ଗାଁ—ସେ ପାଖ ଋଙ୍ଗାଧର, ଅଜଣା ର ଡାକ ।

ଦ୍ୱିତୀୟ ଥର ଯେତେବେଳେ ଋଙ୍ଗାଧର ଆସି ପହଞ୍ଚିଲା, ଶାନ୍ତ ପ୍ରକୃତିରେ ସଙ୍କୋଚ କଲା । ସେତେବେଳର ବିବାହ ପ୍ରସ୍ତାବ ସହରରେ ଅଳ୍ପେ ଅଳ୍ପେ କୁହୁଳିଲାଣି; କିନ୍ତୁ ପଦାରେ ପ୍ରକାଶ ପାଇ ନାହିଁ । ଋଙ୍ଗାଧର ସତେ କି କିଛି ଜାଣେ ନାହିଁ !

ଜହ୍ନରାତି ହୋଇଥାଏ । ବ୍ରଜମୋହନ ବଟବୃକ୍ଷ ଟୁଙ୍ଗୀରେ ବସି ଭାବୁଥାଆନ୍ତି । ବେଳ ଗଡ଼ିଗଲାଣି, ଗାଁରେ ମାଉଦାଣ୍ଡା ପଡ଼ିଆସିଲାଣି, ବିଲୁଆ ଭୁକିଲେଣି । ବ୍ରଜମୋହନ ହଠାତ୍ ଚମକି ପଡ଼ିଲେ । ଶାନ୍ତ କାହିଁ ? ଯେତେ ଦିନ ତାଙ୍କର ସ୍ମରଣରେ ପଡ଼ୁଛି, ସଞ୍ଜବତି ଜାଳିବା ଯେପରି ଧାରାବାହିକ, ଶାନ୍ତ ତାଙ୍କୁ ଡାକି ଆସିବା ମଧ ସେହିପରି । ତାଙ୍କର ନନ୍ଦନ ଆଶ୍ରମର ଶାନ୍ତ—

ବ୍ରଜମୋହନ ଫେରିଆସିଲେ । ଶାନ୍ତ ବୋଧହୁଏ ତାଙ୍କ ଘରେ ଗପ କରୁଥିବ । ଋଙ୍ଗାଧର ବସିଥିବ, ଗାଁ ସେମୁଣ୍ଡ ପୋଖରୀ ଉପରେ । ଜଗାବୋଉ ବୁଢ଼ୀ ବେଖେଇ ମାଳ ଶୋଇପଡ଼ିଥିବ । ନନ୍ଦଗା ତ କାମ ସାରି ସଞ୍ଜରୁ ସଞ୍ଜରୁ ଫେରିଯାଇଛି ।

ଅନ୍ଧାର ଦାଣ୍ଡଘର । ଦୁଇ କେରା ଜହ୍ନ ଆଲୁଅ ଝରିପଡ଼ୁଛି । ଚୁପ୍‌ଚାପ୍ ଏକାଠି ହୋଇ ଠିଆ ହୋଇଛନ୍ତି, ଋଙ୍ଗାଧର ଓ ଶାନ୍ତ ।

ଶାନ୍ତ ମୁହଁଟିକୁ ଆସ୍ତେ ଗଙ୍ଗାଧର ଆଡ଼କୁ ନୁଆଇଁଦେଲା । ତା ପରେ ତରତର ହୋଇ ପଚାରି କହିଲା—"ଚିଠି ଲେଖିବ । ମୁଁ ଯାଉଛି, ବାପାଙ୍କୁ ଡାକି ଆସିବ ।"

ବ୍ରଜମୋହନ ଫେରିପଡ଼ିଲେ । ମନରେ ସାମାନ୍ୟ ଅଭିମାନ ହେଲା, "ମୁଁ ଯାଉଛି ବାପାଙ୍କୁ ଡାକି ଆସିବ !" ତରୁଣର ଅଭିନୟ ଭିତରେ ସେ ଯେପରି ପ୍ରେତ ପରି ଅସି ପହଞ୍ଚିଥିଲେ । କବିର ପ୍ରାଣ ଅନୁଭବ କଲା, ଏ ଅନଧିକାର ଚର୍ଚ୍ଚା । ମନରେ ଦୁର୍ବଳତା ଯୋଗୁଁ ଆଶଙ୍କା ଆସିଲା ; ପୁଣି ଆଶଙ୍କା ଉଡ଼ିଗଲା କବିତାର ଫୁତ୍କାରରେ । ମନେପଡ଼ିଲା, ଯୌବନର ପ୍ରଥମ ପ୍ରଣୟ, କବିତାର ଜୁଆର ।

କିଛି ଦୂର ଯାଇ ପୁଣି ଫେରିଆସିଲେ । ଅଧବାଟରେ ଶାନ୍ତ ଯେପରି ଅଧିକ ବ୍ୟଗ୍ର, ଅଧିକ ଚଞ୍ଚଳ । ବ୍ରଜମୋହନ ଗମ୍ଭୀର ହୋଇ ଘର ଭିତରକୁ ଗଲେ ।

ଠିକ୍ ପରଦିନ ସକାଳେ କବିଙ୍କ ସହିତ କଥାବାର୍ତ୍ତା କରିବାକୁ ଗଙ୍ଗାଧର ଚାଲିଗଲା । ସେ ଦିନଟା ଶାନ୍ତ ମନରେ ସୁଖ ନାହିଁ । କହିଲା— 'ଦେହ ଅସୁସ୍ଥ ଲାଗୁଛି ।'

ଦିନ ଗଲା, ବହୁତ ଦିନ । କିନ୍ତୁ ଗଙ୍ଗାଧରର ଆଉ ଖବର ନାହିଁ । ତାର କବି ପୂଜାରେ ଯେପରି ଭଟ୍ଟା ପଡ଼ିଗଲା ।

ବ୍ରଜମୋହନ ଚିଠି ଲେଖିଲେ, ତାର ଉତ୍ତର ନାହିଁ ।

ଦିନାକେତେ ପରେ ବ୍ରଜମୋହନ ସହରକୁ ଗଲେ ବୁଝିବା ସକାଶେ । ଗଙ୍ଗାଧର ଗୁଜରି ଯାଇଲାଣି । ତାର ବାରିଆଡ଼େ ବିବାହ ପ୍ରସ୍ତାବ ପଡ଼ିଲାଣି । ସେ ପ୍ରଚୁର ଯୌତୁକ ଖୋଜୁଛି । ଏଥିରେ ମୂରବୀ ହୋଇଛି ତାର ଲେଖାଯୋଖା କଏ ଜଣେ ମଉସା ।

ପୁଣି ପିସୀ କହିଲେ,

“ଗଳାରେ କାଗଜ ମ ବାନ୍ଧି ବସିନ୍ତୁ, ମାତ୍ରପତ୍ର ନାହିଁ ? ଶ୍ରୀମ-ଗଦବ ଦେଖିଲେ ଧନ-ଦଉଲତ ନେଇ ବାହା ହୋଇଗଲା; ତୁମେ ବସିଥା !”

ମନ ଘାରି କରି ବ୍ରଜମୋହନ ଗାଁକୁ ଫେରିଆସିଲେ । ଦେଖିଲେ, ଘର ବୁଢ଼ା ହୋଇଯାଉଛନ୍ତି ସେ । ବଳ ତତ୍ପର ଦିନକୁ ଦିନ ଯେପରି କୁଆଡ଼େ କେଉଁଆଡ଼େ ଚାଲିଯାଉଛି ।

ଶାନ୍ତ ଦିନକୁ ଦିନ ଯେପରି କଳା କାଠ ପଡ଼ିଯାଉଛି । କବି ଭାବିଲେ, ସମସ୍ତଙ୍କ ମନ ଅନ୍ଧାର ଯେନ ଛତକୁ ଜାଆଇ ରଖିପାରେ । ତରୁଣ କିଣ ବେଶି କଷ୍ଟ ପାଏ ନା ବୃଦ୍ଧ ? ନିଶ୍ଚୟ ତରୁଣ । କାରଣ ସେ ଜୀବନକୁ ଜୀବନ ବୋଲି ବୁଝେ, ମୁହୂର୍ତ୍ତି ଉପରେ ତାର ନିଶା ପଡ଼ିଥାଏ ।

ବହୁଦିନ ପରେ ଟେଣ୍ଡା ଚିଠି ଆସି ପହଞ୍ଚିଲା । ଗଙ୍ଗାଧର ଲେଖିଛି—“ମଞ୍ଜୁଳା ମନା କଲେ, ଯେତେ ବାନ୍ଧିହେଲା କଲି, ବୃଥା ହେଲା ।” ତେଣୁ ସେ ନିରଞ୍ଜନବାବୁ ଉପୋନ୍ନିଙ୍କ ଏକମାତ୍ର ଝିଅକୁ—। ଚିଠିର ଭାଷା କେଡ଼େ ସୁନ୍ଦର ! କବିତା ପରି ।

“କବି, ଆପଣ ବୁଝିବେ କି ନାହିଁ ଜାଣେ ନାହିଁ; କିନ୍ତୁ ମୋର ଏ ଦୁର୍ଭାଗ୍ୟ ହୋଇ ରହିଲା ଜୀବନ ଗୋଟାକର କରୁଣ କବିତା । ମୁଁ ବଞ୍ଚି ସୁଦ୍ଧା ମରିଛି । ମରି ହୋଇଛି ଗୋଟିଏ ସ୍ମୃତି । ଯାହା ଭାସି ରହିଥିବ, ଆପଣଙ୍କ ସେ [illegible]ର ଆକାଶରେ । ମୋର ସ୍ମୃତିରେ ମୁଁ ତିଳ ତିଳ ହୋଇ ମରୁଛି । କାରଣ ଫୁଲ ଯାହାର ପ୍ରିୟ ଥିଲା, ଝଡ଼ିଲା ଫୁଲର ସ୍ମୃତି ତାର ବିଷ ।

କବି ଚିଠିଟି ପଢ଼ି ହାତ ପାପୁଲିରେ ନିଜର କପାଳକୁ ପୋଛି ପକାଇଲେ ।

ଛି ! ଏଇ କଣ କବିତା ? ହୁଏ ତ ହୋଇଥିବ । ତାଙ୍କର କବିତା ତାଙ୍କୁ କରି ରଖିଥିଲା ନିକମା, ଅଳସୁଆ, ଗରିବ । ରଙ୍ଗାଧରର କବିତା ତାକୁ କଲା ବଡ଼ ସୁକରଥ, ବଡ଼ ଲୋକର ସ୍ୱାଇଁ । କିନ୍ତୁ ଶାନ୍ତ—

ହଠାତ୍ ଯେମିତି ସେ ଦଶ ବର୍ଷରୁ ଅଧିକା ବୁଢ଼ା ହୋଇଗଲେ । ତରୁଣଙ୍କ ଉପରେ କିଏ ବୁଢ଼ା, କିଏ ବା ଟୋକା ! ଗୋଟାଏ ଆରଟାର ଭବିଷ୍ୟତ ନୁହେଁ କି ?

ପୁଣି ବରି ସୁଷରଟୁଙ୍ଗୀ, ପୁଣି ସଞ୍ଜର ଅନ୍ଧାର । କେତେ କଥା ମନେପଡ଼ିଲା । କବିପ୍ରେୟସୀ, କୁଳବୋହୂ । କୁଳବୋହୂ ଉପରୁ ଝୁହିଁଥିବ; କିନ୍ତୁ ସେଇ କିନ୍ତୁ, କାହାର ଭୁଲ ?

ଶାନ୍ତ ଆସିଲା । କବି ଝିଅଟିକୁ ସ୍ନେହରେ କୁଣ୍ଢାଇ ଧରିଲେ । କହିଲେ, "ମା, ରଙ୍ଗାଧର ଅନ୍ୟଠି ବିଭା ହେଲା । ସେ ଦୁର୍ବଳ ଲୋକ, ସେ ବୁଢ଼ା……"

ଶାନ୍ତର ମୁହଁଟା କପରି ବିଭଙ୍ଗ ପଡ଼ିଗଲା । ସେ ଝୁଲିପିବାକୁ ବସିଲା ।

ବୁଢ଼ା କବି କହିଲେ—

"କିଛି ପ୍ରୟୋଜନ ନାହିଁ, ଲୁଚିଲ ଲୁଚିଲ କାନ୍ଦିବାର ମା ! କାନ୍ଦ ମାଡ଼ୁଛି ? ଏଇଠି ମୋର ପାଖରେ କାନ୍ଦ । ମୁଁ ବି କାନ୍ଦୁଛି । ଏଇ ବରି ଚାଟୁଙ୍ଗୀ ଦେଖିଛି, କେତେ ଆଖିର ଲୁହ । କିନ୍ତୁ ମୁଁ ଯାହା ପାଇଁ କାନ୍ଦୁଥିଲି, ତା ପାଖରେ ରଙ୍ଗାଧର ପାସଙ୍ଗରେ ପଡ଼ିବ ନାହିଁ । କବିର ଝିଅ କାନ୍ଦିବ, କବି ପାଇଁ ।"

ଦୁହେଁ ନୀରବ ହୋଇ ବସି ରହିଲେ । ନୀରବତା ହେଲା ପରସ୍ପରଙ୍କର ସହାନୁଭୂତି । ତା ପରେ କବି କହିଲେ—

"ଶାନ୍ତ, ମୁଁ ଘର ବୁଢ଼ା ହୋଇଗଲଣି । ତୁ ଏଠୁ ଚାଲିଗଲେ ଯେ ମୋର ଜୀବନର ଉଦ୍ଦେଶ୍ୟ ହଜିଯିବ ମା !"

ଏକା ସଙ୍ଗେ ଦୁଇ ଜଣଙ୍କ ଛାତି ଦୋହଲାଇ ଚାଲିଗଲା ଦୀର୍ଘ-ଶ୍ୱାସ । ଅନ୍ଧାର ବଢ଼ି ଚାଲିଲା, ଗାଁଯାକ ନୀରବ ।

ବାପଝିଅ ସେଠି ଏକୁଟିଆ ଚୁପଚାପ ହୋଇ ବସି ରହିଲେ ।

ଶାନ୍ତି କେତେ ଦୂର ପ୍ରବୋଧ ପାଇଥିଲା, ଏକା ସେଇ ଜାଣେ ।



# ବସ୍ତର

ନୂଆ ଓଡ଼ିଶାର ବଡ଼ ରାସ୍ତା, ପୂର୍ବଘାଟ ପର୍ବତ ରାସ୍ତା, ପର୍ବତ ଉପରେ ଯେଉଁଠି ସେ ସାଇନ୍ ବୋର୍ଡଟା ମରାହୋଇଛି, ଦେଖିଲେ ଛାତି ଫୁଲିଉଠେ । "ଓଡ଼ିଶାର ସୀମା ଏଇଠୁ ଆରମ୍ଭ ।" ସେହି ବାଟେ ଚାଲିଯାଇଛି କେଜାଣି ପଚିଶ କୋଶ ଦୂରକୁ,—ପଟ୍ଟାଙ୍ଗୀ—କୋରାପୁଟ—ଜୟପୁର—ନବରଙ୍ଗପୁର—ଜଗଦଲ୍ପୁର·····

ପ୍ରକାଣ୍ଡ ରାସ୍ତା,—ଲାଲ ରାସ୍ତା—ପାହାଡ଼ ଉପରେ ଉପରେ—ଚଳେ ଚଳେ—ଚାରିହଜାର ଫୁଟ—ସାଢ଼େ ତିନି ହଜାର--ତିନି ହଜାର—ହଜାରେ—ଚାଲିଛି ।

କେଉଁଠି କେତେ 'ଆମଙ୍କ ଲଙ୍ଗଳ ସିଅ' ରାସ୍ତା କରେ କରେ ସାପେଇ ସାପେଇ ପାତାଳକୁ ବୋଲି ଚାଲିଯାଇଛି—ତାହାର ପଦ ଉପରେ ରାସ୍ତା—ଆଉ ଆର ପାଖେ ଉଚ୍ଚକୁ ଆସିଛି ପାହାଡ଼ର କେତେ ନାକ—କେତେ ହଲର ହଲର ବୁଢ଼ା ଦାନ୍ତ ପରି ବୁଢ଼ା ପାହାଡ଼ର ଦାନ୍ତ—

ତଳେ ପାତାଳ ଭିତରେ ପୁଣି ସମୁଦ୍ରର ଢେଉ ପରି ମାଳ ମାଳ—ପାହାଡ଼—ଲମ୍ବା ବୁଦାଳିଆ । ଆଉ ଉପରେ ମାଳ ମାଳ ମେଘ ହରକରା, କବି-ବରହର ସନ୍ଦେଶ ଘର ଯେମ ଲହଁସି ପଡ଼ୁଛି ।

ମାଲବୁଲା ଖଣ୍ଡେ ମଟର ଲଗାରେ ଡ୍ରାଇଭର ପାଖରେ ଆଗକୁ ଅନାଇ ବସି ଶିବରାମ ପାଲ୍ଟା ଚାଲାଥାଏ । ବଜରଙ୍ଗନଗରରେ ରେଳବାଇରେ ଖଣ୍ଡେ ସେ ପନ୍ଦର ଟଙ୍କାର କାମ ପାଇଛି । ବେଳେ ବେଳେ ସିଠି ମାରେ, ବେଳେ ବେଳେ ଘଣ୍ଟା-ମାର୍କା ସିଗାରେଟ୍ ଟାଣେ ଓ ପଛଟଣା ସୂନ୍ଥା ଉପରେ ହାତ ବୁଲାଇ ଆଣେ । ଗତେ, ଆଉ ଆଟକୁ ଗୁନ୍ଦେ ।

ସେ ବଡ଼ ହୋଇ ନାହିଁ । ସମ୍ପୁଚ ଗାଲକଲେଇ ଆସିଲଣି—ପଛନାଏକଙ୍କ ନଜର ଖାଲି ।

ତାର ଦେହର ଜୋର ବଢ଼ନ୍ତ ଦେଖି । ମଟର ସାମନାରେ ଲଗାହୋଇଥିବା ଆରସିରେ ଯେତେ ଥର ତାର ନଜର ପଡ଼ୁଯାଉଛି, ସେତେ ଥର ସେ ଗର୍ବ ଅନୁଭବ କରୁଛି । ଡ୍ରାଇଭରଟା — ହୋ । ହାଡ଼ୁଆ ପାତଳା ଲୋକଟାଏ ସେ, — କଣ ଥିବ ତାଠିଁ ଜୋର ?

ଏଇ ଗଲାଥର ତାର ଏସ . ଏଲ. ସି. ଟା ଭଲରେ ଭଲରେ ପାଶ୍ ହୋଇଗଲା । ସେ ଆଉ ପଢ଼ି ନାହିଁ ।

ଚନ୍ଦରା, ରମିଆ, ନର୍ସି ରାଓ ଏତେ ଘୋଷି ଘୋଷି ମଧ୍ୟ ଫେଲ୍ ହୋଇଗଲେ ।

ଅତଏବ ତାର ଖୁସି ଜଣା ନାହିଁ, ଦୁଃଖ ଆମୋଟେ ନାହିଁ,—ଖାଲି ଫୁର୍ତ୍ତି !

ଏଇ ନାଲି ରାସ୍ତାଟା,— କେତେ କଥା ମନେ ପକାଇଦିଏ । ଜଗନ୍ନାଥପାଗର ଜରେ ଜରେ ଆସି ଏଇ ରାସ୍ତା ବାଟେ ବର୍ଷାରେ ତିନ୍ତି ତିନ୍ତି କେତେ ଥର ସେ ଇସ୍କୁଲକୁ ଯାଇଛି । ବର୍ଷକୁ ମଣିଷ ଡରିବାକୁ କରେ ନା କଣ—ଖାଲି ମ୍ୟାଲେରିଆଟା ଯାହା ।

ଏଇ ରାସ୍ତାରେ ଫୁର୍ତ୍ତି କରି କରି ଜୀବନ ଗୋଟାକ ମଜ୍ଜଲବ ତାର ହୋଇଯାଉଛି । ଖାଲି ମାଳ ମାଳ ପରିଜାହିଁଏ ଆଉ ଉମ୍ମୋ-

ନୁହେଁ,—ଗୁଳ୍ମସବୁ ଏଇ ପାହାଡ଼ ପରି ଉଚ୍ଚ,—ତାଙ୍କ ଖୋପାରେ ବଡ଼ ବଡ଼ ଗୋଲାପ ଫୁଲ,—ମୁହଁରେ ଚିଂଗାଲ୍--ଉଜ୍ଜ୍ୱଳା ଜରି ଜରି ହସ ।

"ଏ ହେ—ଟୋକା—କୁଆଡେ ଯାଇଥିଲ ରେ ?"

"କୁଳକ ।"

"ମୁଁ ତୁମ ଗାଁ ଆଡ଼େ ଯାଇଥିଲି ।"

"ଆମେ ବି ତୁମକୁ ଦେଖିବାକୁ ଇଆଡ଼େ ଆସିଛୁ, ଆମରା ।"

ଚନ୍ଦନ ଗାଁ ଆଉ ପରୁଣା କୋରାପୁଟର ପରଜ ନୁହେଁ । ବ୍ୟାଣ୍ଡି ଷ୍ଟ୍ରୀଟ ।

ଏଇ ରାସ୍ତାରେ ନନ୍ଦନ ତାର ନୂଆ ଅଭିସାର । ଏଇ ରାସ୍ତା ମନୁ ମନେ ପକାଇଦିଏ, ଦିନ ଦିନକର କଥା, ସଞ୍ଜ ସଞ୍ଜକର କଥା, ରାତି ରାତିକର କଥା ।

ଘଷ ଷ ଭୁସ ଭୁସ୍ ଧୋଇ ଉପରକୁ ମଟର ଚାଲିଛି । ଚଢ଼ାଙ୍ଗା ଗୁଡ଼ି ଅଇଲ । ଏଇ ଚଢ଼ାଙ୍ଗାଟା ସବୁବେଳେ ଖାଲି ମେଘର ଘର । ହେଲା ତୋଫାନ ଆଉ ମେଘମାଡ଼ । କଷ୍ କରର ବର୍ଷାତି ଖଣ୍ଡଟାମାନ ଫଡ଼ ଫଡ଼ ହୋଇ ଉଡ଼ିଲା । ପାଣି ଛିଟାରେ ମଞ୍ଜି ଥରିଉଠିଲା । ଚୁଣିଆଡ଼ ସତେ କି ରାଜ ରାଜ ହୋଇ ବୋବେଇ ଉଠିଲା । ବୁଢ଼ା ପାହାଡ଼ଟା ଘାଗଡ଼ା ଗଳାରେ ହାଉଳି ଖାଇଗଲା ।

ଯୁଆଡ଼େ ଚାହିଁଲେ ଖାଲି ଶର ବନ୍ଧଲା ପରି ବର୍ଷାର ବାଡ଼ । ଏପାଖ ସେପାଖ ଖାଲି ସରୁ ସରୁ ମୋଟ ମୋଟ ଧୂଅଁମୁହାଁ । ଗୋଳିଆ ପାଣିର ଧାର ।

କୁନର୍ ବଡରାହିଁ ଡିଗ୍ରିଡାଙ୍ଗ୍ରି ଯାଇ ଖଣ୍ଡେ ଜସ୍‌ପୁରୀ ପିଢ଼ା ଲଗାଇଦେଇ କୁକୁଡ଼ାକୁଣ୍ଡ ହୋଇ ବସିଲ । ଡ୍ରାଇଭର ନିଶାଣି ଲଗାଇ ଏକା ମନରେ ବସିଛି ।

ଆସିଲେ ଦଳେ ଜଙ୍ଗଲି ଟୋକା । ମୁଣ୍ଡରେ ଟୋପର, ଦେହରେ ପତରଗୁନ୍ଥା ବର୍ଷାତି ପାଣି ମାଡ଼ ଆଡ଼କୁ ଝୁଲେଇ ଧାଆଁନ୍ତାଇଛନ୍ତି । ଏଡ଼େ ବଡ଼ ଟାଆଁସିଆ ବର୍ଷାଟା ତାଙ୍କୁ ଯେତେ କ ଖାଲି କୁତୁକୁତୁ କରୁଛି ! ମୁହଁରେ ଖର ହସ । ମଝିରେ ଆସିବା ବାଟକୁ ମୁହଁ ଆଉ ଡେଙ୍ଗା ସାଙ୍ଗେ ସାଙ୍ଗେ ବୁଲଗଲେ ।

ଶିବରାମର ମନେ ଜାହ୍ନିକ ପଡ଼ିଲା, ଚୈତ୍ର ପରବର ଧାଙ୍ଗ ଗୀତ । ଗୁଣୁ ଗୁଣୁ ହୋଇ ସୁରଟା ଖାଲି ଏପାଖ ସେପାଖ ଲେଉ-ଟାଇ ନେଉଟାଇ ହୋଇଲା—ତା ପରେ ଦୋହଲି ଦୋହଲି ତାଳ ଧରି ଧରି ବୋଲିଲା ଗୀତ ।

ଯେ ହେ ମୋର ପ୍ରିୟତମ ଶର ସାତତାଳ ଭେଦୀ ଶର, ମାହାଡ଼ ଉହାଡ଼ରୁ ତୁ ଆ, ମୋର ଦେହଟାକୁ ବିନ୍ଧଦେଇ କଅଁଳ ମରମରେ ଫୁଲ ଫୁଟାଇଦେଇ ତୁ ଯା । ମୋର ହୃଦୟର ଗହ୍ୱର ଟୋପାରେ ସୂର୍ଯ୍ୟ ଉଦୟ ବେଳର ସୁନେଲି ଜୁଆର ଖେଳୁ । କେତେ ସୁନ୍ଦର ନୋଳି ଦୁଇ ପଖି, କେତେ ଚଞ୍ଚଳ ତୋର ଗତି ଓ ଅଫିଟା [illegible]ର ଲକ୍ଷ, ତୁ ଆ, ତୁ ଆ—"

ଲକ୍ଷ ଛୁଟିଛି, ସହସ୍ରେ ବାଙ୍କ, ସହସ୍ରେ ଉଠା ପଡ଼ା ଦେଇ ଗାଳ ଗାଳ ବରଷା ଓ ରାଜ ରାଜ ପବନ ମାଡ଼ ଭିତରେ ଛୁଟିଛି । ବୁଢ଼ା ମାହାଡ଼ କୋଳରେ ଝଙ୍କା ଝଙ୍କା ଜଙ୍ଗଲ ଆଉ ଡୁଙ୍ଗରର ଅଗ୍ନି ଗାଧୁଆ ଦେଖି ଦେଖିକା ଶିବୁ ଭୁଲୁଛି, ଆଉ କେବେ କେବେ ତଳ ମାଟିଳର ପାହାଡ଼ଗୁଡ଼ିକୁ ଦେଖୁଛି ! ଯେଉଁଠି ପୋଡ଼ ଚାଷ ପାଇଁ ପଙ୍ଗତ ବଣରେ ଲଗିଥିବା ନିଆଁ କୁହୁଳ କୁହୁଳକା ଗୁଡ଼ୁଛି. ଖାଲି ଆଖି ଦରଣା ଦୀର୍ଘଶ୍ୱାସ ।

ଆଜି ଜୁନ ଚଉଦ ତାରିଖ ।

କାଲି ସନ୍ଧ୍ୟାବନ୍ଦା ପରେ ଜହ୍ନ ଉଠିଥିଲା । ସୁନ୍ଦର ଜହ୍ନ, ମହୁ ବାଙ୍କ ଜହ୍ନ ! ଜୂଙ୍ଗସ୍ତ ଉପରେ କଳା ବେଣୀ ଉପରେ ମଥା-ମଣି ପରି ।

କୁଳି ପାଇକି ଯାର ଭୁଞ୍ଜା ଜାନ ଝିଅ ଓଲ୍କା ହୁର୍ ମିରସ୍ତାଦାର ବଗିଚ୍ଚ କାନ୍ଥରୁ ନାଲି ଗୋଲାପ ତୋଳିଥିଲା, ମଣ୍ଡରେ ମାଡିଥିଲା । ପଣ ପିନ୍ଧିଲ ଚଟେଇ ଢ଼େଣା ଫଳ ଲମ୍ବ ମଣିଆଟିକୁ ପିଠିରେ ଝୁଲାଇ ଦୋହଲି ଦୋହଲି ଚାଲୁଥିଲା । ରାଣୀଗଡ ଯିବା ବଡ଼ାଣିଆ ବାଟରେ ଯୋଲ କରରେ କନ୍ଦନ୍ଦିବ ମରି ପୁଣି ଦେଖା । ମୋଟେ ସାନ୍ତାଦାନ ହୋଇଛି । କାଲି ସନ୍ଧ୍ୟା ବାଙ୍କ ତଳେ ଓଲ୍କା ତାର ନୈବେଦ୍ୟ ଅରଚି ସବ ଦେହସ୍ନାର ନେଇ ଧରି କେତେ ସୁନ୍ଦର କଅଁଳେଇ କଅଁଳେଇ କହିଥିଲା "ଶୀତ୍ ଲାଗୁଛି ଗୋ, ଠିକ୍ ପନ୍ତ୍ [ ଅର୍ଥାତ୍ କାର୍ତ୍ତିକ ] ମାସ ପରି ଲାଗୁ ।" କାଲି ସଞ୍ଜବନ୍ଧ ପରେ ।

ପୁଣି ରାତିରେ କ୍ଲବରେ । ବନ୍ଧୁମାନେ ନୂଆ ସମ୍ବନ୍ଧ ପାଇଁ କେତେ ଥଟ୍ଟା ଲଗାଇ ଦେଉଥିଲେ । ପଟ୍ଟନାୟକଙ୍କ ଘର ଜ୍ୱାଁ ପଣାଛ କଥାରେ କଥାରେ ଆଖି ଆଗରେ ଖେଳିଯାଉଥିଲା ଯୁନା ଖଡ଼ିକା ପରି ନକନକ ଗୋଟିଏ ଅପରୂପ ଦେହ । ପାନପତ୍ରର ପରି ମୁହଁଟିଏ, ମିଠି ମିଠି ଯୋଡ଼ିଏ ଆଖି । ସେ କୁଆଡ଼େ ଗୀତ ଗାଏ । ଶିବରାମର ମନଟା କ୍ଲବର ବନ୍ଧୁ ଦଳରୁ ଉଠି ଧୀରେ ଧୀରେ ସେଇ କୁହୁଡ଼ିଆ ଜହ୍ନ ଉଜୁଳା ସାଇଁ ସାଇଁ ଘାଟରେ ଜଗି ବୁଲୁଥିଲା ତାର ସପ୍ନର ଝିଅ ଖୋଜି ଖୋଜିକା ।

ବନ୍ଧୁ ଜଗଦୀଶ ଏଣେ ଘାଗଡ଼ା ଗଳାରେ ତେଲୁଗୁ ଗୀତ ଆଳାପ କରୁଥିଲେ—"ଆଜ ତେଉର କଅଁ ଗୋ—କବେ ମାଲିଜାଲି ନେ ।

ପୁଣି ସକାଳର କଥା । ଭଉଣୀ ଚନ୍ଦ୍ରା ଆସିଲା ହସି ହସି, "ଶୁଭ ଦର୍ପ ଆଣିବୁ ନା ?" ଏଇ ଚନ୍ଦ୍ରା ଠିକ୍ ନରମୂଳୀ ଲଟାର ଉଙ୍କିଟିଏ ପରି । ଗୋଡ଼ହାତ ତାର ତଳେ ପଡ଼େ ନାହିଁ, ଆକାଶରେ ଉଡ଼େ । ତାର ନାକକୁ ଆଙ୍ଗୁଠି ଦେଖାଇ ଶପିଧରୁ ଶିବରାମ କୋରରେ ମୋଡ଼ିଥିଲା । ତାର ଆଖିରେ ଲୁହ, ନାକରୁ ଟି ଟି ଆବାଜ, ମକାପରି ଦାନ୍ତଗୁଡ଼ିକ ଖାଲି ସୁନ୍ଦର ।

ତରବରରେ ଗରମ ପାଣି ପିଇଦେଇ ନେହାଇପଡ଼ ଅଁଳା ତେଲରେ ଟିକଣ ଚିକଣ କରି ସୁନ୍ଦାଟିଏ କାଟି ଶିବୁ ଚାଲିଗଲା ହାଟ୍‌ଘୋନ ବାବୁଙ୍କ ଘରକୁ—ପି. ଡବ୍ଲୁଡ଼ିର କିରାଣି । ବଡ଼ମା କାକାମା କହି ସବୁଦିନ ପରି ସେଠି ଖାଇ ଅନ୍ନ ଓ ଧର୍ମ । ମିନା ସେତେବେଳେ ହାରମୋନିୟମ ବଜାଉଥିବ, ଝିଅ ଗୋଟାଏ ଫୁଟବଲ ଗଡ଼ାଇ ଗଡ଼ାଇ ହତା ଚାରିପାଖ ବୁଲୁଥିଲା । ଶିବରାମ ମିନା କୋଠରୀକୁ ଚାଲିଗଲା । ଟେବୁଲ ଉପରେ ଗୋଟାଏ ଦେହୁଟରେ ଅଧାଖିଆ କେତେଖଣ୍ଡ କଦଳୀଚକଟା, ପାଖରେ ହାରମୋନିୟମ ଓ ଗୀତ ବହି । ଶିବରାମ କାନ୍ଧରୁ ବହିଖଣ୍ଡ ପାଟିରେ ପକାଇଦେଇ ମିନା ପାଟିରେ ବଖଣ୍ଡ ଗେଞ୍ଜିଦେଲା । ମିନାର ଗୀତ ବନ୍ଦ ହୋଇଗଲା । ତାପରେ ଟେକିଆ ଓଠରେ କାନ୍ଧରୁ ଭଜା ପାଟିରେ ପଡ଼ିଲେ ଶିବରାମ ମିନା ଓଠରେ ଓଠ ଲଗାଇ ଶୋଷିଦେଲା । ହାତଟା ପିଠିବାଟେ ଗଳେଇ ପକାଇଲା ।

ମିନା ମଧ୍ୟ ତାର ଗୃହପାଳିତ, ତାର ବଗିଚାର ଗୋଟିଏ ଟେଷ୍ଟ ଫୁଲଗଛ ।

ସୁନ୍ଦର ପୃଥିବୀରେ ସବୁ ସୁନ୍ଦର । ସୁନ୍ଦରମାର ଶବ୍ଦ ମନ ଭିତରେ ଉଦ୍ୟମ ଆଣିଦିଏ । ସେଉଁ ଉଦ୍ୟମ ସଦସେ ପବନ ଫୁଙ୍କି ନେଇପାରେ ନାହିଁ—ସହସ୍ରେ ବରଷାର ସହସେ ପାଣିଛିଟା ଲିଭାଇ ପାରେ ନାହିଁ ।

ହିମଗିରି ଭାବ ଭାବ ଗଲା । ଚଇତ ପରବର ଗୁଲ୍‌ଜାର ଗୀତ ଗାଇ ଗାଇ ଗଲା; "ହେ ସୁନ୍ଦର, ତୁମେ ସ୍ଥିର ଆଉ ସୁନ୍ଦର । ପାହାଡ଼ର ଅସୁମାରି ଗଛ ତୁମରି ସୁନ୍ଦରିମାରେ ପୁଲକିଉଠେ । ହରିଣ ହରିଣୀକୁ ଶିଙ୍ଗରେ ଖୁଞ୍ଚାମାରେ, ମୟୂର କଳାପଥର ଉପରେ ଡେଣା ମେଲାଇ ନାଚିଆ ଆମ୍ବଗଛ ତଳେ ନାଚେ । ତୁମର ନରମ ମଖମଲ ଘାସର 'ଭଙ୍ଗ୍‌' ମଦଠୁ ଆହୁରି ଟାଣ । ଆମର ପାହାଡ଼ ନେପାଳ ( ଅର୍ଥାତ୍‌ ଝରଣା )ର ହାତକୁ ବାନ୍ଧି ପାରୁଥିବା "ଷାଠୀ" ସାପର ଓଟରୁ ଆହୁରି ତାର ଜୋର । ସେଇ ଝିଙ୍କାରେ ଆମର ଧାଂଗଡ଼ା ବସାରେ ସୁଇଁ ଧାଂଗଡ଼ୀ ଓ ତୁଇଧାଂଗଡ଼ା ।"

ଯାଇଁ ଯାଇଁ ଲମ୍ବି ଛୁଟିଥାଏ । ପ୍ରବଳ ତୋଫାନ ଆଉ ମେଘ । ଦି ପାଖର ଘନ ଜଙ୍ଗଲ ମଝିରେ ନାଲି ରାସ୍ତାଟି ଉଠାଣି ପଡ଼ାଣି ଭୁଲାଯାଇଛି । ମନେ ପଡ଼ିଲା ତାର ସିନ୍ଦୂରଗାର । ଦୂର ଦେଶରେ କେଉଁ ବାନ୍ଧବୀ । ବର୍ତ୍ତମାନ ହଜିଯାଉଥିବା ଦରଭୁଲା ଗୋଟିଏ ସ୍ମୃତି । ରସେଲକୁଣ୍ଡାରେ ସ୍ୱାମୀ ଘରକରି ସେ ମଧ୍ୟ ତାକୁ ଭୁଲିନାହିଁ । ତେଣୁ ଆଜି ସକାଳ ଡାକରେ ଖଣ୍ଡେ ଚିଠି । କେତେ ସ୍ନେହ ଆଦର ଲୁଚି ଲୁଚି ଝଡ଼ିପଡ଼ୁଛି ସେଇ ବଙ୍କା ଟେମଣା ଅକ୍ଷର ଜଞ୍ଜାଳରୁ । ଅତି ସ୍ନେହରେ, ଅତି ଯତ୍ନରେ ସେ ଚିଠି ଲେଖିଛି । ତାର ମାଷ୍ଟର ସ୍ୱାମୀର ଅତି କଷ୍ଟରେ ବସି ସେ ଚିଠି ଲେଖିଛି । ହୁଏତ କଷ୍ଟକୁ ଲଗାଲଗି ହୋଇ । ନୋହିଲେ ଠିକ୍‌ ତାର ଚିଠି ଯେଉଁଠି ସରିଛି, ସେଠି ଡେଙ୍ଗା ଡେଙ୍ଗା ଇଂରେଜି ଅକ୍ଷରରେ ଗାରଗୁଆ ହୋଇଥାନ୍ତା କାହିଁକି ? "ତୁମେ ଆଜିକାଲି ରାତିରେ ଭୂତ ସପନ ଦେଖ କି ?" ସେ ଲେଖିଛି । କି ବୁଝିଥିବ ମାଷ୍ଟର ସ୍ୱାମୀ ଏଥିରୁ ? ହୁଏତ ସ୍ତ୍ରୀକୁ ଘୁଡ଼କୁ ଓଟାରିନେଇ ଗେଲ୍ କରିଥିବ ଅତି ଆଦରରେ । କେଡ଼େ ପିଲାଳିଆ ତୁମେ !" କିନ୍ତୁ ସ୍ୱପ୍ନ କଣ ବା ସେ ଲେଖିଛି ସେ ବୁଝେ ।

ଲେଖିଲାବେଳେ ଜାନମୂଳ ତାର ଲାଲ ହୋଇଯାଇ ନ ଥିବ କି ?

ଶିବରାମଙ୍କ ହାତ ଖଟାପ ଲାଗିଲା । ସ୍ମୃତିର ସେହି ମଳିନ କାଗଜ ଖଣ୍ଡ ଯାହିଁ ପାହାଡ଼ ପରି ଓଜନ ହୋଇ ମାଡ଼ିବସିଲା ତାର ଛାତିରେ । ଶୀତର ସୂର୍ଯ୍ୟ ନିଭିଗଲା । ସୁସ୍ଥତା ଭିତରେ ଅସୁସ୍ଥତା ଆସିଲା ।

ଉଃ, କେତେ ଦୂର ଦୂର ପାଣି ଝରୁଛି ! ମେଘର ଧୂଆଁରେ ସବୁ କେମିତି ଯାଉଁଶିଆ ଧଳା । ତାର ଗମ୍ଭୀର ଯେପରି କଳ ହେଉନାହିଁ । ଖାଲି ଲମ୍ବ ଲମ୍ବ ହାଉଳ ଖାଉଛି ବୃଦ୍ଧା ପାହାଡଟା । ଉଃ ! ଅସହ୍ୟ ଲାଗୁ ।

ନାଃ, ଯେତେ ଚେଷ୍ଟା କଲେ ଅଶାନ୍ତକୁ ଭୁଲି ହୁଏନାହିଁ । ସୁସ୍ଥତା ଭିତରେ ଅବିଶ୍ୱାସ ଆଣେ ସେ-ହିଁ ।

ମଠର ଘଣ୍ଟି ବାଜୁଛି । ଥାଇ ଥାଇ ବେଳେ ବେଳେ ସହସ୍ର ଶାନ୍ତ ଶାଁକୁ ତାହାଣକୁ ଗର୍ଜି କରି ବୁଲି ପଡ଼ୁଛି । ଥରି ଥରିକା ପାହାଡ ବାଟେ ବାଟେ ଉଠୁଛି । ତାହାଣେ ପାହାଡ଼ର କଟାହୋଇଥିବା ଜାନୁ ତିଖ ହୋଇ ଉଠିଛି । ବାଏଁ ଚଳ ପାତାଳ ତାହାର ଭିତରେ ଅସୁମାର ମୁଣ୍ଡିଆ ମୁଣ୍ଡ ଠେକୁଛି—ଚନ୍ଦା, ଜଙ୍ଗଲିଆ ଚନ୍ଦା, ଜଙ୍ଗଲିଆ ।

ଘନ ଜଙ୍ଗଲ ଭିତରୁ କୁହୁଳି କୁହୁଳି ଧୂଆଁ ଉଠୁଛି, ଆକାଶକୁ । ପୋଡ଼ୁ ଚାଷ ପାଇଁ କଟା ହୋଇଥିବା ଜଙ୍ଗଲର ଧୂଆଁ । ଏହିପରି ନିୟମ ବିରୁଦ୍ଧରେ ମଣିଷ ଯୁଦ୍ଧ କରେ । ଭାଗ୍ୟ ମଣିଷକୁ ଯେପରି ଉପହାସ କରେ, ଦାଉ ପାଇଲେ ମଣିଷ ବି ଭାଗ୍ୟକୁ ଉପହାସ କରିବାକୁ ଛାଡ଼େ ନାହିଁ ।

କୌପିନ ପିନ୍ଧା କଳା ଏକୁଟିଆଟା ତଳ ଉପର ପିଠିରେ ଠିଆହୋଇ କୋଦାଳରେ ପଥରମୁଣ୍ଡରେ ପାହାର ମାରୁଛି, ଦୂର

ଦର ବରଷା । ଆଜ ପୋଡ଼ୁ ଧୂଆଁ, ଆକାଶର ଠାକୁରଙ୍କ ଉପବାସ ନଣ ସତେ ଆରତି ଧୂଆଁ । ନଅ ଭୂମର ଉଙ୍ଗୀ ଜଙ୍ଗଲ । ତହିଁରୁ ମୁଁ ଭାତ ଢମ୍ବଠା ଗୋଟାଇନେବି । ଯେଉଁ ଭାତ ଢମ୍ବଠାରୁ ତୁମେ ମୋତେ ବଞ୍ଚିତ କରିଛ । ଏହି ମୋର ହାତ ମୁଠାରେ ବଜ୍ରର ଜୋର । ଏହି ମୋର କୁରାଢ଼ି, କୋଦାଳ ଆଉ ଏହି ମୋର ଧାନମୁଠା ।

ବାଘ ଜଆଦର ଭୂଇଁରେ ପାହାଚ ପାହାଚ ଧାନ କ୍ଷେତ । ଶିବଗ୍ରାମ ଭରି ଭରି ଗଲା । ଖାଲି ମଣିଷର ବଳପ୍ରୁ କାହାଣୀ ଉପରେ ଠାକୁର ଭୁହାଇ ଭୁହାଇ ବଜ୍ର ଚଡ଼ଚଡ଼୍, ମେଘ ଆଉ ତୋଫାନ ପେଷୁଛି । ପେଷୁଛି ରୋଗ ଆଉ ବାଘ, ଜଙ୍ଗଲ, ଓଡ଼ିଆ, ଜଦା ପିମ୍ପୁଡ଼ି ଖରି ମଣିଷର ଧାର ଲଢ଼ିଛନ୍ତି । କିଏ କେତେବେଳେ ସାମାନ୍ୟ ଆଶ୍ରା ଦେଖି ଆଳଜ ପଡ଼ ଦୁର୍ଦ୍ଦଶା ଆଉ ତୋଫାନ କଟାଇ ଦେଉଛି । କିନ୍ତୁ ମଣିଷ ବଢ଼ିଚାଲିଛି । ପାହାଡ଼ କାଟି ରାସ୍ତା ତିଆରି ହେଉଛି । ଜଙ୍ଗଲ ସଫାଇ ଭାତ ତିଆରି ହେଉଛି, ସ୍ୱର୍ଗକୁ ନିଶୁଣୀ ଉଠୁଛି । ମଣିଷ ରହୁଛି, ମଣିଷ ଦାନ ବଞ୍ଚୁଛି ।

ତାପରେ ତାର ନିଜର କଥା । ତାର ଯୌବନ ଅଛି, ଜୋର ଅଛି, ସୁଖ ଅଛି । ସବୁ ସେ ପାଇଛି, ଯାହା ଖୋଜୁଛି ସବୁ । ହୃଦୟ ଖୋଲିଦେଇ ଧରିଛି । ଏପାଖ ସେପାଖ ଯେତେ ମୂଲ୍ୟ ତହିଁରେ ଝୁଡ଼ୁଛି, ସବୁ ସେ ଗୋଟାଇଛି । ଆଜି ଯଦି ସେ ମରେ, କେତେ ଲୋକ ତାହା ପାଇଁ ଝୁରିହେବେ !

ତରୁଣର ମନ ବେଳେ ବେଳେ ମୃତ୍ୟୁକୁ ଭାବେ, କାରଣ ତାର ଜୀବନ-ପ୍ରାଚୁର୍ଯ୍ୟ ଅଧିକ ।

ଘାଟି ପରେ ଘାଟି ଡେଇଁ ଗାଡ଼ି ଚାଲିଥିଲା । ଦର ଦର

ବରଷା କମି ନାହିଁ । ଉଠୁପଡ଼ ଜଙ୍ଗଲର ଛବି ନଭିନାହିଁ । ବୁଡ଼ା ପାହାଡ଼ର ଆବୃଷ୍ଟ ବୁଡ଼ା ପଥରଆ ଦେହର ଦୃଶ୍ୟ କମିନାହିଁ ।

ଏଇ ଦୋରଚେଇ ପୋରଚେଇ ଦୃଶ୍ୟ ଦେଖି ଦେଖି ଶିବରାମର ଆଖି ମନ ଭିତରକୁ ମୋହିଁଥିଲା । ସେ ଦେଖିଥିଲା ଚଳଚଞ୍ଚଳ, ସୁନ୍ଦର ଛବି - କେବଳ ହସ, ସ୍ନେହ, ଭଲପାଇବାର ନିତଦେଖା ଝମ—ମାନ, ଅଭିମାନ ଓ ଗେଲ ଆଦର ଦେଖିଥିଲା. ଏଇ କଅଁଳ ସ୍ନେହର ଲଟା ଜାଲ କପଟଭାବରେ ତାକୁ ବାନ୍ଧି ରଖି ପାରିଛି । କାହାର ପାଶ କେତେ ଟାଣ ।

ସେ ପାଇଛି । ନ ପାଇଲାର ବୁଭୁକ୍ଷା ତାର ନାହିଁ । ତା'ର କେବଳ ଆନନ୍ଦର ସ୍ୱାଦ କଷିବା, ପାଇବା ଦୁଃଖର ଗଣାଗଣିତ ।

ପବନ ଥମ୍ବିଲା । ଶିବରାମ ଅନ୍ୟମନସ୍କ ହୋଇ ବସିଥିଲା । କିଛି ଭାବୁ ନ ଥିଲା । କେବଳ ତାର ମନ ଗଭୀରର ଅନୁଭୂତିର ଛବି ତାର ଚେତନା ମନକୁ ଆମୋଦିତ କରି ରଖିଥିଲା । ତାର ଜାଗ୍ରତ ଦେହ ଉପରେ ନଜର ହିପ୍ନୋ କରି ଯାଉଥିଲା ।

ଖୋମାରେ ଗୋଲପ, ପରଜା ଝିଅ—ଚନ୍ଦର ଗାଁର ଝର ଝର ଝୋଲରେ ପାଣି ଅଣିବାବେଳେ ଜହ୍ନ ରାତିରେ ନାଚନ୍ତି ଗୌଲଟି, ଘରେ ଝିଙ୍କା—ହାରମୋନିୟମ ପାଖେ ମିନା-- ଦୂରର ବାନ୍ଧବୀ—ଆଜି ତାର ଭାବୀ ସ୍ତ୍ରୀ, ସେ ସୁନ୍ଦର ଗୀତଗାଏ ।

ବନ୍ଧୁ ନରସିଂ ରାଓ, ଭଉଣୀ ଚନ୍ଦ୍ରା—ବାପ ବୋଉ, ତାର ତାର ପୋଷା ମୟୂରଟି—ତାର କୁକୁର—ତାର ଘଡ଼ାଘର ।

ଜହ୍ନରାତି,—ସକାଳ—

ସରୁ ଜଙ୍ଗଲ ରାସ୍ତା, ନାଲି ସଡକ—ଜଗନ୍ନାଥ ସାଗର ପୋଖରୀ ।

ମନ୍ଦର—ସଞ୍ଜଘଣ୍ଟା ।

ସବୁ କମରା ଆପେ ଆପେ ଯେମିତି ଗିଏ ଖଣ୍ଡ ବଡ଼ାର ଗଡ଼ିଯାଏ, କାନ୍ଥରୁ ବେଡ଼—ଶେଷରେ କେବଳ ଗୋଟିଏ ସଙ୍ଗୀତମୟ ଅନୁଭୂତି—ଆଖି ଢୁଲେଇ ଆସେ, ମନ ଖସି ପାଏ—ସ୍ମୃତି !

*　　　*　　　*

ହଠାତ୍ ଶିବନାମକୁ ଚମକ ଲଗିଲା । ପୃଥିବୀ ଯେପରି ଦୋହଲୁଛି ଠିକ୍ କାନପାଖେ । ଲାଗଲା ଯେପରି ଲକ୍ଷେ ଭୂମିକମ୍ପ ଆଜି ପ୍ରଳୟ । ଜଗତ କମରା ହୋଇପାଉଛି, ଭାବିବାକୁ ତର ନାହିଁ ।

ଥରେ ସେ ଆଖି ଖୋଲି ଚାହିଁଥିଲା, ଦେହରେ ଯେପରି ମହାପ୍ରେ ଯନ୍ତ୍ରଣା ଲହ ଝର ଝର ଲଙ୍ଗା ମୁହଁରେ ଆଖିଜୋଡ଼ିକ ମୁଦି ଯାଇଥିଲା ଦାରୁଣ ଯନ୍ତ୍ରଣାରେ—ଭୟରେ କୋଳା ହାକି ହୋଇଗଲା ।

ଲହୁ ସାଙ୍ଗେ ଟୋପା ଟୋପା ଲୁହ ମିଶିଗଲା । ଅଭିସାରର ମରଣର ଗୁଳି ।

ତା ପରେ—ସ୍ମୃତି—

*　　　*　　　*

ଯେତେବେଳେ ଚହଳ ପଡ଼ିଲା ନା, ସୁନ୍ଦର ଅକ୍ଷ ପାଙ୍ଗ ହୋଇ ହେଜ ବିୟାର ଖୋଟାଏ ଲମ୍ବା ପାହାଡ଼ କଡ଼କୁ ଓଲଟି ପଡ଼ିଛି, କୋରାପୁଟ ବା ଜୟପୁର ବା ପଞ୍ଚାଙ୍ଗୀ ସହରରେ ମେଡେ ବେଶି ଗୁଞ୍ଜଲ୍ୟ ଉପୁଜିଲା ନାହିଁ ।

'ଓଃ, କେତେ ଗାଡ଼ି ଓଲଟେ, କେବା ଅନୁ କଣ ?"

କେବଳ ସହରୀ କର୍ମକ୍ଲାନ୍ତ ଜନଜନଙ୍କ ଉକ୍ତି ।

ସଜ୍ଜନ ମାହେବ କହିଲେ, "ଡ୍ରାଇଭରଟା ବ ଓ ହୋଇଛି । ନୋହିଲେ ୫୩୭ ଆଜି ୨୨୭ରେ କେଉଁ ଜବ ଠାନ୍ ମଜା ଦେଖାଇ ଦେଇଥାନ୍ତି ।"

ମଲ୍ଲ ଶିବରାମ ଖଣ୍ଡେ ପଥର ଉପରେ ଆପଣା ବାହାରେ ମୁଣ୍ଡ ରଖି ମୁହଁ ପୋତି ପଡ଼ିଥାଏ । ଯେପରି ସେ ଖୁବ୍ କ୍ଳାନ୍ତ !

ପାଖରେ ଆଉ ପଥର ଉପରେ ପୂର୍ବଘାଟର କଳାମୁଣ୍ଡିଆ ଏଣୁ ତେଣୁ ଦ'ଗୁରଟା ମୁଣ୍ଡ ଟେକାରୁଥାନ୍ତି । ବର୍ଷା ଛାଡ଼ିଥାଏ । ଦୂରରୁ ଦୂରରୁ ଡରି ଡରି କେତେକ ପାହାଡ଼ିଆ ଲୋକ ତଳକୁ ଚାହିଁ ଦେଖୁଥାନ୍ତି ।

ଚନ୍ଦଲ'ଗୁଡାର ଲଧଜାନ ନାଇକ କାନରେ ଭୁନ ଭୁନ କହୁଥାଏ, "ଅଃ, କେଡ଼େ. ଜବର ଧାଙ୍ଗଡ଼ ଥିଲା ରେ ସେ ବାବୁଟା ।"

ନାଇକ ମୁଣ୍ଡ ହଲାଇ କହିଲା, "ହଁ। ରେ, ଠିକ୍ ମୋର ପୁଅ ପରି । କମ୍ ଜରରେ ମରିଗଲା ଚବ୍ବି ( ଅର୍ଥାତ୍ ଗତ ) ବର୍ଷ ।"

* * *

"ଏଁ, ଯୋଡ଼େ ଲୋକ ମଲେ !" ଏଇଟା ମିଳନ୍ତି ଚୁପଚାପ୍ ଗପ । କେବେ, ସେତିକିରେ ସରେ, କାହାରି କାମ ଅଟକିଲା ନାହିଁ ।

ତଳର୍ ଗାଁରେ ଖବର ପହଞ୍ଚିଲା ନାହିଁ । ଖୋଃ, କେତେ ନୂଆ ବାବୁ – କେତେ ବାବୁ — ଯେ ହାତ ପତେଇଲା ସେ ଖାଇଲା; ଯେ ନ ଆଇଲା ନାହିଁ—କିଏ ପଚାରେ କାହାକୁ ?

ତଳର୍ ଗାଁରେ ପୁଣି ଗୁଡ ଉଠିଲା । ପାଣି ବାଟେ ବାଟେ ଚାଲିଲେ ନୂଆ ବାବୁ—ନଗୁଡ଼ିଆ ସରାଇଘର ଖାଲି ରହିଲା ନାହିଁ । ଆଉ ଜଣେ ଆସିଲେ ଖୁବ ବଡ଼ବାବୁ ଓ ତାଙ୍କ ସଙ୍ଗେ ଜଣେ ଡାକ୍ତରଣୀ । ଜଣେ ପୂର୍ବରୁ ଜଣେ ପଶ୍ଚିମରୁ ଗଡ଼ ପଡ଼ ସେଠି ଭେଟାଭେଟି ହୋଇ ଗଳ୍ପ କରନ୍ତି. ବୃନ୍ଦଗାନ ଉପଭୋଗ କରନ୍ତି । ଭୂଲି ଯାଉଥିବା ଦେଶୀ ଲୋକଙ୍କୁ ଦେଖିବାକୁ ଆସନ୍ତି ।

କ୍ଲବଘରେ ନର୍ସିଂ ଗୁପ୍ତ ଘଣ୍ଟାଏ କାଳ ମନ ଦୁଃଖରେ ବସିଥିଲା । ଶିବସାମର ମୃତ୍ୟୁ ଆଜ ଆଲୋଚନା ଦ୍ୱାରା ଆମୋଦ ଆଣିଥିଲା କ୍ଲବଘରକୁ । କ୍ଲବ୍‌ଘର ଗରମ ହୋଇ ଉଠିଥିଲା । ତାର ମୃତ୍ୟୁ ଗୋଟାଏ ଖବର ଯୋଗାଇଛି, କଥାବାର୍ତ୍ତା ପାଇଁ ଗୋଟାଏ ବିଷୟ ବସ୍ତୁ । ଅପରର ମୃତ୍ୟୁରେ ସହାନୁଭୂତି କରି ଦି ପଦେ କଥା କହିଲେ ନିଜକୁ ଖୁସି ଲାଗେ । କାରଣ ମନ-ଗହ୍ୱରର କଣେ କଣେ ପ୍ରତିଧ୍ୱନି ଉଠେ—ମୁଁ ବଞ୍ଚିଛି—ମୁଁ ବଞ୍ଚିଛି ।

କ୍ଲବ୍‌ରେ ପୁଣି ଗୀତ ହୋଇଥିଲା । ଜଣେ କହିଥିଲା, "ଧର ଡାବ୍‌ଲା ନର୍ସିଂ ଗୁପ୍ତ, ଭାରି ଦୁଃଖ ହେଉଛି, କା ମନରେ । ତା ପରେ ଗୀତ, –"ମାଲ୍‌ଓ୍ୱାଡ଼େ ଲାପାଲାଓ୍ୱାଡ଼େ ଏ ।"

ସେଦିନ ସଞ୍ଜରେ କାନ୍ତିବାଟି ସାମୁଏଲ ବାବୁ ଘରୁ ଓଳକା ମଇସା ନେଇ କ୍ଲବରୁ ଫେରୁଥିବାବେଳେ ବାଟରେ ମେଘ ଏ ବର୍ଷା ହେଲା । ଓଳକା ବସିଲା ଯାଇଁ ନର୍ସିଂଗାଗୃହ ପଲାପିଣ୍ଡାରେ । ଗ୍ଲାଇ ଅନ୍ଧାର ପଡ଼ି ଆସୁଥିଲା । କିଛି ସମୟ ପରେ ଝିଙ୍କା ପରଜା ଉପମଦ ଟୋପିଏ ପିଇ ଆସି ଦେଖିଲା । ଓଳକା ହସିଲା । ଝିଙ୍କା ଉଳଉଳ ଧାଂଗଡ଼ବସା ଗୀତଟିଏ ଗାଇ ଗାଇ ହସି ହସି ଯାଇ ପହଞ୍ଚିଲା ।

ସାରଆଗାରୁ କାତ କୁଡ଼ୁ ଶୁଣ୍ଡିଗାରୁ ଝଣ୍ଡା
ଆଲୁରେ ଟୋକୀ କେତେ ରେସୀ ଡଣ୍ଡା
(ସତେ ରେ ଟୋକୀ କେତେ ଯୁଆନ ଭୁ ଅଛୁ ଦେଖିଲା ।
କଏଁଡା ମାନା ମାନୂଲ କାଏଡା ସବା ସବୁଲ (କ ସୁନ୍ଦର
ମାନୂଛୁ ଧାଂଡ଼ା ସବ କେଡ଼େ ସୁନ୍ଦର ଦିଶୁଛୁ ତୋଲୁ କାନେ ଲୁଲ୍‌ ···
( ଆଜ ତୋର ତଳ କାନରେ ବୋଲ )

ସଞ୍ଜବେଳେ ମିନା ହାର୍ମୋନିଅମ ବଜାଉଥିଲା । ହାବୁଧୋନ

ବାବୁ ଖବର ନେଇ ଆସି ପହଞ୍ଚିଲେ, "ଓଗୋ, ଶୁଣୁଛ ?" ମିନା ପାଖକୁ ଯାଇ ଡାକିଲେ ।

ଶୁଣୁ ଶୁଣୁ ମିନାର ମଣି ବେଳ ଆଜ ନୂପୁର ବୁଜିଆସିଲେ ଗମନ୍ଧ ଚନ୍ଦ୍ର କୁଣ୍ଡାକୁଣ୍ଡି ହୋଇ ହସଖୁସିରେ ବସି ଗପ କଲେ । କେତେ ଅନୁଆଳ କଥା – ସ୍ୱା କଥା, ତା କଥା, ନିଜ କଥା, ପିଲା-ମାନେନ ସହା ଗପ କରନ୍ତି ।

* * *

ଦନାକେତେ ପରେ ଦୂରର ବାଜଣା ମଧ୍ୟ ଶୁଣିଲେ । ନୂପୁ-ବୁର ମୁହଁ ଶୁଖେଇ ଟିକଏମାକୁ ବହୁ ନ ବସୁ ତାଙ୍କର ସ୍ୱାମ ଅପ ଜଣ୍ଢଲେ, "ଆଜାଥାରେ ଚସଲ କଣ ମ, ଆଜ ଷନଠା ନୂଆ ଟିଗପନ ପିନ୍ଧନ୍ତୁ । ମତେ ଚଞ୍ଚଳ କିଛି ଖାଇବାକୁ ଦିଅ, ମୁଁ ଯାଏ ।"

"ହଁ, ବଜାରରୁ ତମର କ କ ଲୁଗା ଆସିବ କହୁବନି ଟିକଏ—"

ଅନ୍ତ ବେଶି ହେଲେ ପାଞ୍ଚଟା ମିନିଟ ଦୀର୍ଘଶ୍ୱାସରେ ଅଧା ଜୀବନର ସୁକୁମାର ସାହଚର୍ଯ୍ୟର ଅଭିଜ୍ଞତା ଅନୁଭୂତିର ଶେଷ ତର୍ପଣ । ଇତି ଶ୍ରୀ

* * *

ତାର ଦୁଇ ଶ୍ୱଶୁର ଘରେ ଖବର ପହଞ୍ଚିଲା । ଶ୍ୱଶୁର ଶ୍ରୀ ଏନ. ଚେନ୍ଦଭାନୁ ପଟ୍ଟନାଏକ ଗାରୁ ମହାଶୟ ଦାଢ଼ି ଆଉଁସି ଆଉଁସି ଅତି ଗମ୍ଭୀର ଲୋକ ପରି କହିଲେ, "ବୁଝିଲ ମାନସୀ ବୋଉ, ତାର ହାତ ଦେଖିଲାଦିନୁ ମୋ ମନରେ ସନ୍ଦେହ ଥିଲା । ଚନ୍ଦ୍ର ଉପରେ ଉଦ୍ଧଣ୍ଡ ଫଳକ ଉପରେ ଯବଚିହ୍ନ । ମୁଁ ଜାଣିଥିଲି, ତନ୍ଦ୍ରିରୁ ଅଗ୍ନି ଭୟ ଆଉ ଅପମୃତ୍ୟୁ । ମଟର ଓଲଟିବାଟା ଅଗ୍ନିଭୟ ନୁହେଁ ଆଉ କଣ ? ମଟର ତ ଅଗ୍ନିରେ ଚାଲେ !"

ମାନସୀ ବୋଉ କହିଲେ, "ହଉ, ଯାହା ଭଗବାନ୍ କରନ୍ତୁ,—। ତେବେ ତୁମେ ଚିଠି ଲେଖ, ଆଜି ନାରାୟଣ ପାଖକୁ । ଆମର ସେଇ ସୂର୍ଯ୍ୟନାରାୟଣକୁ ହେଲେ କରିବା, ନଇ ପଛେ ଯାହା ହେବ—

ପାଖ ଘରେ ମାନସୀ ଅଳତା ନାଉଥିଲା ଓ କାନପାତି ଶୁଣୁଥିଲା । ନୂଆ ନାଁ ଶୁଣି ମନରେ ଉଲ୍ଲାସ ଆସିଲା—ବାପା ବୋଉ ତେବେ ଶନ୍ତାନୁ ଗୁଡ଼ିଲେ, ଏଁ !

*　　　*　　　*

ଶିବରାମ ସଂସାର ଗୁଡ଼ ଚାଲିଗଲା । ତାର ନାଁ ଲୁଚିଗଲା ବିଚିତ୍ର ନୁହେଁ, ବଡ଼ ଦୁନିଆରେ କିଏ କେତେ ଜନ୍ମୁଛନ୍ତି, କେତେ କିଏ ମରୁଛନ୍ତି !

ଶିବରାମ ମରିଗଲା, ଗ୍ରହ ମଣ୍ଡଳର ନାହିଁ, ଫୁଲ ଝଡ଼ିଲା ନାହିଁ, ଜଙ୍ଗଲ ଝରଣାର କଳ କଳ ଶବ୍ଦ ବନ୍ଦ ହେଲନାହିଁ, ପରଜା ଝିଅଙ୍କ ଗାଲଭଜ୍ଜୁଳା ହସ ବନ୍ଦ ହେଲା ନାହିଁ ।

ହସକାନ୍ଦର ଦୁନିଆ ଯେମିତି ଚାଲେ, ଠିକ୍ ସେମିତି ଚାଲିଗଲା. ଶିବରମର ସ୍ଥାନ ଫାଙ୍କା ପଡ଼ିଲା ନାହିଁ ।

କେବଳ ତାର ବାପା ହଠାତ୍ ଯେପରି ଆହୁରି କୋଡ଼ିଏଟି ବର୍ଷ ବୟସରେ ବଢ଼ିଗଲେ ।

ଆଉ ତାର ବୋଉ, ସବସହଣୀ ମା ବସୁନ୍ଧରା ସେ, ସବୁବେଳେ ଝୁରି ହୁଏ, ପ୍ରତି ମୂହୂର୍ତ୍ତରେ ଖାଉ ହୁଏ ଆଉ କାନ୍ଦେ ।

ଅଉ ବୁଢ଼ୀ ଘଟଗୁଣ୍ଡା ପାଚିକି ନେଲବେଳକୁ ବଡ଼ ବଡ଼ ଉଷୁମ ଉଷୁମ ଲୁହ ଟୋପାସବୁ ତହିଁରେ ମିଶିଯାଏ ।



# ଅବୁଝା ଦରଜ

ଆକାଶରେ ପ୍ରବଳ ମେଘ ।

ସଞ୍ଜର ଦୂର ବାଟୋଇ ଚଢ଼େଇ କଳରବ କରି ଲଗି ଲଗି ଝୁଲୁଥିଲେ ଅସଂଯତ ବେଣୀ ପରି, କଳା ବୋଳା ଆକାଶର ତଳେ ତଳେ ।

ଶୁଣିଛୁ, ଗେଣ୍ଡାଳିଆ ଯଦି ମୁଣ୍ଡ ଉପରେ ଉଡ଼ିଯାଆନ୍ତି, ତେବେ କୁଆଡେ ହୁଏ ବର୍ଷାଦର ।

ପଢ଼ୁଥିଲି ବସି "ମେଘଦୂତ ।" ଯକ୍ଷଙ୍କର ସତୀ ପତ୍ନୀ ପ୍ରତି କରୁଣାର ମାଧ୍ୟମରେ ମନ ମୋର ଚାଲିଲା ମଡ଼ୁଥିଲା ବ୍ୟାକରଣରୁ ଆକାଶକୁ ।

ବେତସ ଲତା, ଶୀର୍ଣ୍ଣା ନଦୀ, କଅଁଳ ପାଦର ଅଳତା-ଚିହ୍ନ ଲାଗିରହିଛି କେଉଁ ଚିକ୍କଣ ସ୍ମୃତିରେ । କେଉଁ ପଥର ଚଟାଣ ପ୍ରଚାର କରୁଛି ଉଦ୍ଦାମ ଯୌବନର ସୌରଭ ।

-- ନିଶା ପଥର ଅଭିସାରିକା ।

ଢଳୁଥିବା ଧଳା କୁନ୍ଦଫୁଲ ଉପରେ ଏ ପାଖ ସେ ପାଖ ହେଉଥିବା କଳା ଭଅଁର ପରି କାହାର ଚପଳ ଆଖିରେ ଗମ୍ଭୀର ଢୋଳା......

ମେଘଦୂତ ।

ହଠାତ୍ ମୋର ଦୃଷ୍ଟି ପଡ଼ିଗଲା ଆରପାଖ କୋଠାର ସ୍ୱପ୍ନା

କରର ସେ କୋଠରୀରେ ।

ଦେଖିଲି, ସେ ଶୁଣୁଛି । ସେ ଖୋଲା ଝରକା ଉପରେ ଝୁଙ୍କିପଡ଼ି ସେ ଆଗକୁ ଚାହିଁ ରହିଛି ସ୍ଥିର ଦୃଷ୍ଟିରେ, ପ୍ରସ୍ତରମୂର୍ତ୍ତିଏ ପରି । କେଡ଼େ ସ୍ନିଗ୍ଧ ତାର ଚାହାଣି !

କଳା-ହାଣ୍ଡିଆ ଆକାଶର ଗୂଢ଼ ରହସ୍ୟର ଛାଇ ପୂରିଛି ତାର ସେହି ଚାହାଣୀରେ । ମେଘର ଛାଇ, ଆକାଶର । ଉଡ଼ନ୍ତା ଚଢ଼େଇଙ୍କର । କେଉଁ ଅସୀମ ତା ଦୃଷ୍ଟିର ଉଦ୍ଦେଶ୍ୟ ।

ନୂଆ ଆସିଛି ସେ, ଆଉ କେବେ ଦେଖି ନାହିଁ ।

ତାର ସୁନ୍ଦର ମୁହଁର ଉଦାସ ନିରସ୍ତତା ଉପରେ ଓହ୍ଲାଇ-ଥିଲା ସଞ୍ଜର ଲାବଣ୍ୟ ।

ମନେପଡ଼ିଲା, ଦୃଷ୍ଟି ସେପାରର କେଉଁ ଅଜଣା ମାନସ-ସୃଷ୍ଟି । ମେଘଝରା, ଆକାଶ ତଳେ ସନ୍ଧ୍ୟା·· ଆଉ 'ସେ' ।

ସେ ଚାହିଁଲା, ମୋର ପଢ଼ା ବନ୍ଦ ହେବାରୁ ବୋଧହୁଏ । ଦୂରରୁ ତାର ଦୃଷ୍ଟି ଭିତରକୁ ଚାହିଁ ମନେହେଲା, ଛାଇଆଲୋକ ଅନ୍ଧାର ତଳେ ନିସ୍ତବ୍ଧତା ଭିତରେ କିଏ କେଉଁଠି କରୁଛି ସୃଷ୍ଟି-ବାହାର ସନ୍ଧ୍ୟାରେ ପୂରବୀ ଆଳାପ, ସନ୍ଧିରେ ସନ୍ଧ୍ୟା ହେଉଛି ଉଷା ; ଆକାଶର କଳା ମେଘ ଭାଙ୍ଗିଯାଉଛି ଖଣ୍ଡ ଖଣ୍ଡ ହୋଇ, ଅଳପ ଅନ୍ଧାର ମଠ ମଠ କରି ଯାଉଛି ଚାଲି, ଦୂରର ଜଙ୍ଗଲ ହାଇମାରି ଚେଇଁଉଠୁଛି ଥରି ଥରି, ଦୋହଲୁଛି ପତ୍ର, ଦୋହଲୁଛି ଲତା, ସବୁ ତଳମ ଉପରେ ଲମ୍ବ କଡ଼ର ପାଖୁଡ଼ା ଯାଉଛି ଖୋଲି, ଡେଙ୍ଗା ଗଛରେ ବୁଢ଼ିଆଣୀଜାଲର ଖିଅଟିଏ ଛିଣ୍ଡି ଓହଳିପଡ଼ୁଛି ବୁନ୍ଦାଏ ଗୋଲ କାକର ଟୋପା ଧରି ।

ତାର ଚାହାଣିର ମହୁଆଳି ନିଶା ଭିତରେ ଅନୁଭବ କଲି ସମୁଦ୍ର ଉପରେ ସର୍ଯ୍ୟୋଦୟର ଅନୁଭୂତି ।

ସେତେବେଳେ ଆକାଶର କଳା ମେଘ ଧଳା ପାଲଟେ, ଧାନର ରଙ୍ଗରେ ତେଜର ପକ୍ଷୀ ଉଡ଼ାଇଦେଇ ସୂର୍ଯ୍ୟ ଆସି ଠିଆହୁଏ ନିତି ଦେଖା ଆକାଶର ଅଧଖୋଲା ଦୁଆର ମେ ଘ [illegible], ଅଭିଭୂତ ହୋଇ ସେ ବୁଝିଗଲା ଝରକା ପାଖରୁ । ଆଜି ଦିଶିଲା ନାହିଁ ।

ମୁଁ ସେଠି ବସିରହିଲି । ପଢ଼ା ହେଲା ନାହିଁ ଆଜି, କାଲି ପୁଣି ପରୀକ୍ଷା ।

ବରଷା ଥମିଲା । ଆସିଲା ଗାଢ଼ ଅନ୍ଧାର । ବସିରହିଲି ସେଠି ଏକୁଟିଆ ।

କେହି ଦିଶୁନାହିଁ କୁଆଡ଼େ, ବରଷା ପରେ ଶୁନ୍ ଶାନ୍ । ଆସନ୍ନ ଅନ୍ଧାରର ଶୁନ୍‌ଶାନ୍ । ସାମନାର ସେ ହୋମହଲ ଘରଟା ଦିଶିଲା କେଡ଼େ ଡେଙ୍ଗା ଆଜି ଖୋଲା ଝରକାଟା—ହାଡ଼ି ହାଣ୍ଡି ଠିଆହୋଇ ରହିଲା ଡେଙ୍ଗା ଘରଟା, ଆକାଶ ଆଗରେ ଡେଙ୍ଗା ମଣିଷଟାଏ ପରି, ପରେ ନାହିଁ ମାଉଁସ—ହାଡ଼ କଙ୍କାଳ ଖଞ୍ଜାକାଠି ଡେଙ୍ଗା ଦେହଟା, ମୁଣ୍ଡ ଯାହାର ଦିଶୁନାହିଁ ।

କେଉଁ ଗୋଟାଏ ସ୍ମୃତିକାନ୍ ସନାତନ, ତାହାର ମ[illegible]ନ ମୋର ମନ ପାଇଲା । ବିରସ, ନୀରସ, ଶବ୍ଦ ନାହିଁ, ରଙ୍ଗ ନାହିଁ, ଭାଷା ନାହିଁ, ଖାଲି ଶରଣମ...... ।

ମନେ ପଡ଼ିଲା, ଦୂର ଗାଁ ମଶାଣିରୁ ଚିତାର ଧୂଆଁ ଉଙ୍କିର ଭଉଁରି ଉଠୁଛି ଗଛ, ଗାଁ-ଘର ଉପରକୁ । ସେ[illegible]ଏ ଦୂରରେ, ଘଞ୍ଚ ଅନ୍ଧାରରେ—

ମାଟିଆଟିଏ [illegible]ଖରେ ଧରି ଓହ୍ଲାଇଛି ଭୂଆସୁଣୀଟିଏ ନଈ-ବନ୍ଧରୁ ତଳକୁ । ସାମନାରେ ଝଙ୍କା ବାଡ଼ ଢିଅ ଗାଁ ଗୋହିରି ।

ନଥର ପଥର ହୋଇ ଛୁଟିଛନ୍ତି ବନ୍ଧେ ବନ୍ଧେ ଗାଁର ସବୁ ସ୍ତ୍ରୀ-ପୁରୁଷ । ଉଷ୍ମ ଉଷ୍ମ ଶାସବୋହୁ ତଳେ ମୁଣ୍ଡ ଯାଇଛି ଲୁଚି ।

ମନେ ପଡ଼ିଲା, ଅନ୍ଧାରୁଆ ଦଣ୍ଡା ଉପରେ ଉଞ୍ଚ ହୋଇ ଗୋଟାଏ କୁଦ··· ··· ଉଞ୍ଚ ହୋଇ ଗୋଟାଏ କୁଦ, ରାସ୍ତାପାଖେ ଲୁଚ୍ଛା ପଡ଼ିଆ ଆଉ ଅନ୍ଧାର ··· ··· ଆକାଶରେ ଛିଟିକା ତାରା ।

ବଲୁଆଟିଏ କୁଦ ଉପରେ ଧୀରେ ଧୀରେ ଉଠି ଠିଆହେଲା । ଦେହକୁ ଅଳ୍ପ ଉଞ୍ଚ କରି ମୁହଁକୁ ଆକାଶକୁ ଟେକି ଲହର ଦେଇ ବୋବାଇଲା । ତା ପରେ ଓହ୍ଲାଇ ଆସି କେଉଁଆଡ଼େ ଚାଲିଗଲା ।

··· ସନାତନ ···

ଉଠି ଚାଲିଗଲି । କାଲି ପରୀକ୍ଷା ।

ପଢ଼ା ମଝିରେ ଅନେକ ଥର ଖାଲି ଚାହିଁବସିଛି । ସେ କୋଠରୀଟିରେ ଆଲୁଅ ଦିଶିଛି, ଆଲୁଅ ଚାଲିଯାଇଛି ।

କିନ୍ତୁ ଅଧିକା କିଛି ଦେଖି ନାହିଁ । କାଲି ପରୀକ୍ଷା ।

ପଢ଼ା ସାରି ଖଟରେ ଯେତେବେଳେ ଯାଇ ଶୋଇ ପଡ଼ିଲି, ଚଞ୍ଚଳ ନିଦ ଆସିଲା ନାହିଁ ; ଆସିଲା ଏଣୁ ତେଣୁ ଚିନ୍ତା ।

ଉଠିପଡ଼ି ଝରକା ପାଖକୁ ଚାଲିଗଲି । ଘର ଅନ୍ଧାର ।

ମୁହଁ ବଢ଼ାଇ ପଦାକୁ ଚାହିଁ ଦେଖିଲି –ମେଘ ଛିଣ୍ଡିଯାଇଛି, ଚନ୍ଦ୍ର ଅସ୍ତ ହେଉଛି । ଯୋଡ଼ି ଦେବଦାରୁ ଗଛ ଡାଳରେ କେହି କୁଆଡ଼େ ନାହିଁ । ମଳିନ ଆଲୁଅ ଦୂରରେ ଦୂରରେ ସହରର ବିଜୁଳିବତୀ ଅନ୍ଧାରରେ ଝୁଲୁଛି ।

ଶୋଇଥିବ ସେ ସାମନା କୋଠରୀରେ ପରୀ ! କଣ ଭାବୁଥିବ ମନରେ, କଣ ଦେଖୁଥିବ ସ୍ୱପ୍ନ ? ନିଦୁଆଳି କିଶୋରୀ କବିତା ।

ଦମ ବନ୍ଦ କରି ସାମନା କୋଠାର ଖୋଲା ଝରକା ଆଡ଼କୁ ଚାହିଁ ରହିଲି । ସେହି ଅନ୍ଧାର ଭିତରେ ମୋର ମନ କଳ୍ପନା କରି ନେଇଗଲା ସୁନ୍ଦରୀମାର ସବୁ ଉପକରଣ ଦେଇ ତାକୁ ।

ସେ କଣ ପୁଣି ଉଠିଆସିବ ନାହିଁ ଝରକା ପାଖକୁ ? ମନରେ କଣ ତାର ମଧ କୌତୁହଳ ହେଉ ନ ଥିବ ?

ମନ ମୋର ଚାହିଁଲା, ସେ ଆସୁ । ··· ଆସୁ ··· ··· ···
ଛନଛନ ଲଗିଲା ······

ମନ ମୋର ଖୁଣ୍ଟିଲା ଝରକା ପାଖେ ଠିଆହୋଇ ଏଇ ନିର୍ଜନ ରାତରେ ସେ ପୁଣି ଛଳ ଛଳ ହୋଇ ଖୁହୁଁ, ଡାକୁ, କହୁ— ମୁଁ ମଧ ଭଲପାଇଛୁ ତୁମକୁ ।

ଏଇ ଚନ୍ଦ୍ର ଅସ୍ତ ଯାଉଛି । ଏଇ ନିର୍ଜନ ରାତି, ରହସ୍ୟ, କଳ୍ପନା, ସ୍ମୃତି; କନ୍ତୁ ···

ଦୀର୍ଘଶ୍ୱାସ ପକାଇ ଫେରି ଆସିଲି ମୁଁ ବିଛଣାକୁ ।

କ୍ରମେ ନିଦ ଆସିଲା । ମନେ ପଡ଼ିଲା ତାର ସେ ଖୁହାଣୀ, ମନେପଡ଼ିଲା କାଳିଦାସଙ୍କ କବିତା-ଶିଳ୍ପୀର ଧନୁର ଫୁଲ କି ସେ, ଗୁଡ଼ ପଡ଼ଛି ଏଇ ଭୂଇଁତଳେ ।

ସ୍ୱପ୍ନ ଦେଖିଲି, ସେ ମୋର ଅତି ନିକଟରେ । କଅଁଳ ତକିଆଟାକୁ ଛାତିକୁ ଟାଣି ନେଇ ଅଜସ୍ର ଚୁମ୍ବନ ଅଜାଡ଼ି ଦେଲି ତାହାରି ଉଦ୍ଦେଶ୍ୟରେ ଏକା ନିଃଶ୍ୱାସରେ ।

ତା ପରେ ତକିଆଟାକୁ ଦେଲି ଠେଲି ପୋପାଡ଼ି । ଶୋଇପଡ଼ିଲି ।

ଅନୁଭୂତିର କଳ୍ପନା ··· ···ଅଧରାତ୍ରି । ନେଳି ଆକାଶ, ସଫା ଜହ୍ନ, ନଈ ବାଙ୍କରେ ସବୁଜ ଚେନାଏ ବାଲି, ତା ଉପରକୁ କେଶାଫୁଲର ପୁଞ୍ଜ । ନଈ ପାଣିରା, ଫୁଲଫୁଟା ସୋରିଷ କିଆରି,

ଆକାଶର ଗୁଡ଼ ଜମାଇ ଉଡ଼ିଗଲେ ଯୋଡ଼ାଏ ଚଢ଼େଇ, କଳରବ କରି । ··· ଉଡ଼ିଗଲେ ଯୋଡ଼ାଏ ଚଢ଼େଇ ।

ଯୋଡ଼ାଏ ଚଢ଼େଇ ।

*   *   *   *

ପଛଆଡ଼ର କେଉଁଠା ବନ ଅଣନିଃଶ୍ୱାସ ହୋଇ ଉଡ଼ି ଚାଲିଗଲା । ତା ପରେ ବନସାରା ଉଚ୍ଛ୍ୱାସ, ଛୁଟି ।

କବାଟଟି ବନ୍ଦ କରି ଝରକା ଖୋଲି ମୁଁ ବସେ ବନସାରା, ଯେଉଁ ଘରର ସେ ଝରକାକୁ ଉଡ଼େ ଚଢ଼େଇ ।

ସକାଳେ ସେ ଥର ।

କାହିଁକି କେଜାଣି ହସି ହସି ସେ ଉଠି ଆସିଥିଲା ଝରକା ପାଖକୁ । ଅଖିରେ ମୁହଁରେ ହସ ଉଚ୍ଛୁଳି ପଡ଼ୁଥିଲା ତା'ର, ମୁଁ ଯେତେବେଳେ ତାକୁ ଦେଖିଲି ।

କାକର-ଢଳା ଘାସ ଉପରେ ପହିଲି ଆଲୁଅ ଯେମିତି ମାଡ଼ିଯାଏ, ଠିକ୍ ସେହିପରି ସେ ହସିଲା ।

ଗଙ୍ଗଶିଉଳି ଫୁଲ ଗୋଟା ଗୋଟା ହୋଇ ଝଡ଼ି ପଡ଼ୁଥିବ, କାକର ଢଳ ଢଳ ଘାସ । ନବୁଆଳି ଆଲୁଅ, ସୌମ୍ୟ ଆକାଶ·········

କାକର ଢଳ ଢଳ ଘାସ ଉପରେ ପହିଲି ଆଲୁଅ—

ହଁ।··· ···

ମାଟି କାନ୍ଥ ··ଖଡ଼ ଘର । ହଳଦିଆ ଖଡ଼ ଘର··· ଫୁଲ ଭର୍ତ୍ତି ସଜନାଗଛ···ଫୁଲ ଫୁଟା ଶିମିଳିଗଛ···

ଦୂରରୁ ଜଙ୍ଗଲପାଖର ନଦଭଙ୍ଗା ଆଳାପ···

ସଜ ଆଲୁଅ···ସଜ ଘାସ···

ସେ ଚାଲିଯିବା ପରେ ବସି ବସି ଭାବିଲି ।

କାହିଁକି ଜାଣେ ନାହିଁ, କେତେ ସ୍ୱପ୍ନ ତ ମୁଁ ଦେଖିଛି, କାହିଁକି ମୁଁ ପାଉଛି ତାକୁ ମୋର ନିଜର ସ୍ୱପ୍ନମୟ ଅନୁଭୂତି ଭିତରେ । ନୂଆ ଚେଇଁ ଉଠୁଥିବା କିଶୋରର ସ୍ୱପ୍ନ ଭିତରେ ପ୍ରତି ପଦାର୍ଥର ସେଇ ହେଉଛି ରଙ୍ଗ ।

ମଝିରେ ଦୁଇଟା ଘରର କାନ୍ଥ ଆଉ ରାସ୍ତାଟା ତ, ଆଉ କଣ ?

ରାସ୍ତାରେ ଦୁନିଆ ଗଡ଼ି ଚାଲେ, ମୋର ଭଲ ପାଇବା ଚାଲେ ରାସ୍ତା ଉପରେ । ଭାବେ, ମୋ ମନ ମୋର ନିଜର, ମୋ ଖିଆଲ ମୋର ନିଜର, କାହାର ଡହିଁରେ ହାତ ନାହିଁ ।

ଆଉ ଭାବେ, କେବେ କେବେ ବସି ଭାବେ – ସେ ଆଉ ମୁଁ, ମଝିରେ ଦୁନିଆର ଅଗଣିତ ଲୋକ ।

ଝରକାଟା କେତେବେଳେ ଥାଏ ଖୋଲା ବା ଆଉ କେତେବେଳେ ବନ୍ଦ ଥାଏ । ଦୂରରୁ ଦେଖେ, ଖଟ, ଟେବୁଲ, ଚଉକି । ଦେଖେ, ଅଲଗୁଣିରେ ଲୁଗା, କାନ୍ଥରେ କେତେ ଛବି ପଡ଼ି ଦିଶେ ।

କିଏ କେତେ ଆସନ୍ତି ଯାଆନ୍ତି, ସେ ବା ପିଣ୍ଡାକୁ କେତେବେଳେ ଆସେ, ଯାଏ । କଣ ତାର ମନକୁ ମନ ଭାବେ; କିନ୍ତୁ ମନଟ କେବେ ସ୍ଥିର ରହେ ନାହିଁ ।

ତା ଠାରେ, ମୁଁ ଦେଖେଁ ମୋର ମନର ରଙ୍ଗ । ତଥାପି ତ ସ୍ୱପ୍ନ !

ସେଦିନ ସୁଇ ନେଉଟାବେଳେ ଝରକାକୁ ଗୁହିଁ ବସିଥିଲି । ଦେଖିଲି, ସେ ଆସି ପହଞ୍ଚିଲା । କିରପଟିଆ ହୋଇ ଦିଶୁଥାଏ । ବେଣୀଟି ଖୋଲା, ପିଠି ଉପରେ ବାଳ ଲୋଟିଥାଏ ବାଙ୍କ ବାଙ୍କ କୁନ୍ଦ କୁନ୍ଦ କଳା ମେଘ କରରେ ଯେପରି ବିଜୁଳି ଖଣ୍ଡିକ ଦିଶେ,

ତାର କାନ କରେ କରେ ଗାଲରୁ ଧାରେ ଦଶୁଥିଲା ସେଦ୍ସ୍ୱପଣ । ମୁଣ୍ଡ ବାନ୍ଧୁଥିଲା । କଣ ଭାବଲା ସେ, ଆଞ୍ଜୁଳା ଆଞ୍ଜୁଳା କର ମୁଣ୍ଡବାଳ ସେ ଏ ପାଖ ସେ ପାଖ ଗୁଡ଼ିଲା । ମୁହଁ ଉପରେ ଲମ୍ବ କେଶ ଟାଣି ଧର, ଅଳ୍ପ ଫାଙ୍କ ରଖି ସେ ଯଦାକ୍ ଗ୍ୱହିଁଲା, ତା ପରେ ବୋଧହୁଏ ଏ ପାଖେ ମତେ ଦେଖି ପଳାଇଲା । ଧୀରେ ଧୀରେ ଗ୍ୱଲଯାଇ ଆଉ ଆଲ ହୋଇଗଲା ।

ମୁଣ୍ଡ ବାନ୍ଧସାର ପୁଣି ଥରେ ସେ ଆସିଥିଲା । ବନା ସଙ୍କୋଚରେ କୁ କୁ କୁ କୁ କର ଗ୍ୱହିଁରହିଲା ସରଳ ଆଖି ।

ତା ପରେ ଗ୍ୱଲଗଲା ।

ସଞ୍ଜ ମଡ଼ ଆସିଲା, ଆଜ ଆସେନ କେତେ ଚନ୍ଦା । ବସିରହୁଥାଏ ସେଠି ।

ଭଲ ଲାଗୁଥାଏ ଭାବବାକୁ, ପୁଣି ଲାଗୁଥାଏ, କଣ ଗୋଟାଏ ଯେପର ମୋ ମନରୁ ଗ୍ୱଲଗଲା, ଯାହା ପାଇଁ ମୁଁ ଝୁରୁଛୁ । ଖସି ପଡ଼ିଲା କେଉଁ ଫୁଲ, ଝଡ଼ପଡ଼ିଲା କେଉଁ ପତ୍ର, କାହାର ମୁହଁ ଝାଉଁଳ ପଡ଼ିଲା ।

କାଲୁ ପୁଣି ଭାବଗଲା, ସେ ଆସିବ ।··· ··· ବାଉଁଶବୁଦା ସେ ପାଖେ ପୋଖରୀ କୂଳରୁ ନାଳ ଅନ୍ଧାରରେ ଓଦା ସୁରୁସୁନ୍ଦୁ ହୋଇ ପାଣି ମାଟିଆ ଯେହ ସେ ଫେରୁଛୁ ।

ଦୂରରୁ ଶୁଭୁଛୁ ଆମ ଗାଁ ମାହେଶ୍ୱର ମନ୍ଦରରୁ ଆଳତିଘଣ୍ଟା । ଶୁଭୁଛୁ ବୁଢ଼ା ବଡ଼ାପାଙ୍କ ଖଣ୍ଡ କାଶ ।

ସେ ଆସୁଛୁ ।

* * *

ରାତରେ ଅନ୍ୟାନ୍ୟ କାମ ସାର ଯେତେବେଳେ ମୁଁ ଅବସର ପାଏ, ଭାବେ ତାର କଥା । ସେ କଏ, ନା କଣ ତାର ?

କୌତୁକ ମିଶା କୁତୂହଳରେ ମନ ଭିତରେ କୁତୁ କୁତୁ ହୋଇଉଠେ, ମନକୁ ମନ ହସେ, ଖୁସି ହୁଏ ।

ଏଇ ଯେଉଁ ଅସରନ୍ତ ରାତିର ଅନ୍ଧାର ମନକୁ ମୋର ବାନ୍ଧି ନେଇଯାଏ ତାରା-ଦେଶକୁ ବୋଲି, ତା'ହାର ପ୍ରତୀକ ପରି ଆଉ ପାଖରେ ସେ, ସେହିପରି ତାହାର ପ୍ରାଣର ଓ ଭାବର ପ୍ରାଚୁର୍ଯ୍ୟ, ସେହିପରି ସେ କଳ୍ପନାମୟୀ ।

ମୁଁ ତା ସମ୍ବନ୍ଧରେ କିଛି ଜାଣେ ନାହିଁ—ଭଲ, କଳ୍ପନାର ଖେଳ ଅନ୍ଧାରେ ଅନ୍ଧାରେ, କୁହୁଡ଼ିଆ ଜହ୍ନ ଆଲୁଅରେ, ସେହି ଭଲ ।

*　　　*　　　*

ଧରାପଡ଼ିଗଲା ମୋର ଚାହିଁ ରହିବାଟା ବୋଧହୁଏ ; କାରଣ ଦେଖିଲି ମୁଁ ମୁହଁ ବଢ଼ାଇବାରେ ସେ ପଳାଏ, ନୋହିଲେ ଆଡ଼ୁଆଳ ହୋଇଯାଏ ।

ମୁଁ ନିରସ୍ତ ହେଲି ନାହିଁ । ଯେତେବେଳେ ସେ ଝରକା ପାଖକୁ ଆସି ଦେଖିଲା ମୁଁ ଚାହିଁଛି, ବାରମ୍ବାର ଅପ୍ରସ୍ତୁତ ହୋଇ ଫେରିଗଲା ।

ତା ପରେ ବୋଧହୁଏ କ୍ରମେ ତାର ବିଶ୍ୱାସ ବଢ଼ିଲା ଯେ, ପଦାକୁ ଅଖି ଟେକାଇଲେ ଯେପରି ଘର, ଗଛ, ରାସ୍ତା ଦିଶନ୍ତି ସେହିପରି ମଧ୍ୟ ଝରକା ପାଖେ ମୁଁ ବନ୍ଧା ଦୃଶ୍ୟ ଭିତରେ ଗୋଟାଏ ଅପରିବର୍ତ୍ତନୀୟ ଛବି । କ୍ରମେ ଦେଖେ ଅଧେ ଲାଜ ଅଧେ ସହଜ ହୋଇ ସେ ମୋର ଝରକାକୁ ଚାହିଁ ଠିଆହୋଇଛି । ଆଖି ତାର ପଚାରୁଛି, "ତୁମେ ହିଁ କଣ ଭଗବାନଙ୍କ ଚଳନ୍ତ ରାଜ୍ୟରେ ଏକମାତ୍ର ଅଚଳନ୍ତ ଅଳସୁଆ, ତୁମେ ଆଉ ଝରକା ଏ ଦୁହିଁଙ୍କର ସମ୍ବନ୍ଧ କଣ ? ତୁମେ ବୋଧହୁଏ ଛବି, ଆଉ ଝରକାଟା ଫ୍ରେମ ।"

କରୁଣ ଆଖି କରି ଚାହିଁରହିଲା । ମିନତି ଛଳଛଳ ମୋର ଆଖି ଢାଳୁଥିଲା କଳ୍ପନାର ପୁଷ୍ପାଞ୍ଜଳି ।

ପୁଣି ସେ ଚାହିଁଲା, କ୍ରମେ ତାର ଦୃଷ୍ଟି ସରଳଶାନ୍ତ ହୋଇ-ଆସିଲା······କଅଁଳ ସହାନୁଭୂତି ବୁଝିଲି ।

"କଣ ତୁମର ଦୁଃଖ ? କାହିଁକି ବା ମତେ ଚାହିଁ ରହ ଏତେ, କୁହ ତ ? କାହିଁକି ଏପରି ହେଉଛ ?"

ଅଳ୍ପ ହସି ମୁହଁ ନଲି କରି ସେ ସେଠୁ ଉଠିଗଲା, ମୁଁ ମଧ୍ୟ ଉଠି ଚାଲିଗଲି ।

ଦିନେ, ଦି ଦିନ, ତିନି ଦିନ, ଝରକା ପାଖେ ମୁଁ ତାକୁ ଚାହିଁରହିଛି, ଆଖିରେ ପଲକ ପଡ଼ୁନାହିଁ । ମନ ଭିତରେ ପୂରିଉଠିଛି ମଣିଷ ହୃଦୟର ପାଇବା ନ ପାଇବାର କବିତା, ଯାହା ଯେନ ମଣିଷ ଗୋଟା ଗୋଟା ଜୀବନ ଉଜାଡ଼ିଦେଇ ବସେ, ଯାହା ଯେନ କବି ବଡ଼ାଇ କରେ, ସେହି କବିତା ।

କେତେ ଥର ଲଗେ ଆମର ଲୁଚକାଳି ଖେଳ । ନିଜର ଅଜାଣତରେ ହେଉ ପଛେ କେତେବେଳେ ସେ ଆସି ଯାଏ ଫେରି, କେତେବେଳେ ଧରାପଡ଼ି କହୁ ନ ଜାଣିଲା ପରି; ଫୁଲକଢ଼ୀ ପରି ହାତ ପାପୁଲି ଯୋଡ଼ିକ ମୁହଁ ଉପରେ ଢାଳି ଦେଇ ଅଣ୍ଟା ମୋଡ଼ି ଯାଏ ଚାଲି ।

ନଚ୍ଛଟିଆ ଜହ୍ନରାତିରେ ବେଳେ ବେଳେ ପରସ୍ପର ଆଡ଼କୁ ଚାହିଁରହି ଆମେ ଦୁଇ ପାଖର ଦୁଇ ଘରେ ବସି ରହୁଛୁ ।

ଭାବେ, "କଣ ଭାବୁଛି ସେ ମନେ ମନେ ?"

···ସତେ କଣ ଜଣକର ମନର ଭାବ ଆଉ ଜଣକର ମନରେ ଢେଉ ଉଠାଇପାରେ ···?

ମୁଁ ଚାହିଁ ରହୁଛି, ଆନନ୍ଦ ପାଉଛି, ଭାବୁଛି ?

କହନ୍ତ, ଭଲ ପାଇବା ଗୋଟାଏ ପାଗଳାମି···ଆଜ ଭାବୁଛି ଏତେଦିନ ପରେ···ସେହି ମୂହୂର୍ତ୍ତକର ପାଗଳାମିରେ ଦିନଗୁଡ଼ାକ ପାଣି ପରି ବୋହିଯାଇଛି— କାହିଁକି ?

କାହିଁକି ମୂହୂର୍ତ୍ତ ପାଲଟେ ପ୍ରତୀକ୍ଷା, ପ୍ରତୀକ୍ଷା ପାଲଟେ ସ୍ମୃତି, ସ୍ମୃତି ପାଲଟେ କ୍ଷତ, ଯାହା ଚାଲିଗଲେ ସୁଦ୍ଧା ପୁଣି ପୁଣି ଆସେ ।

ଦିନେ ଦିନେ ଚାହିଁ ଚାହିଁ ବସି ଯେତେବେଳେ ଦେଖେ ସେ ଆସି ଚାଲିଗଲା, ଅଭିମାନ ହୁଏ ମୋର ଭାରି । ଉଠିଆସି ଏଣେ ତେଣେ ମନ ଦିଏ । ଭାବେ, ସବୁଯାକ ପରିଶ୍ରମ ଖାଲି ମୋର । ପୁଣି ମନ ହୁଏ, କଣେଇ ଟିକିଏ ଚାହିଁଦେବାକୁ, ଝରକା ପାଖେ ସେ ଅଛି କି ନାହିଁ ।

ପୁଣି ଉଠି ଆସି ଶୂନ୍ୟ ଝରକା ଆଡ଼କୁ ଚାହିଁରହେ ।

"କହ, ସବୁ ଭଲ ପାଇବା ଏକା ମୋର··· ନୁହେଁ ?"

ମୋର ସମୟ ଗୁଡ଼ାକ ଖାଲି ଛୁଛା. ତୁମର ଭାରି ମୂଲ୍ୟବାନ ନୁହେଁ ?

ଆଚ୍ଛା, ଆଉ ଚାହିଁ ବସି ଏତେ ଉପାସନା ମୁଁ କରିବି ନାହିଁ, ଜାଣି ରଖିଥା ।ଇତିଶ୍ରୀ ।

କ୍ରମେ ଦିନ ମଉଳି ଆସେ, ପାନିଆ ଧରି ମୁଣ୍ଡ କୁଣ୍ଡାଇ ବସେ ସେ । ମୁଁ ଚଉକିରେ ଆରାମ ହୋଇ ବସି ହାତ ବଢ଼ାଇ ଆରଶିଟାଏ ଦେଖାଏ ଝରକା ଆଡକୁ, ଆଉ ଆରଶିରେ ତାର ପ୍ରତିବିମ୍ବ ଦେଖେଁ ।

କୌତୁକ ଲାଗେ ।

ତା ପରେ ଝରକା ଆଡକୁ ଉଠିଯାଇ ସିଧା ଚାହେଁ । ହଠାତ୍ ତାର ଦୃଷ୍ଟି ପଡ଼େ । ମନର ଅଭିମାନ ମୁଁ ଭୁଲି ନାହିଁ । ଆଖି ଫେରାଇ ନେଇ ସେ ଦୂର ଆଡ଼କୁ ମୁଁ ଚାହେଁ । ଦୂରକୁ

ଦୂରକୁ ସେଇଁଠି କଳର କୋଇଲା ଧୂଆଁ ଅସୁରର ଉଡ଼ନ୍ତା ବେଣୀ ପରି ଘୁରେଇ ଘୁରେଇ ହୋଇ ଆକାଶକୁ ଉଠୁଛି ।

ଅଭିମାନ, ଅଭିମାନ, ଏତେ ଆପଣାର ଭାବଥିଲି ମୁଁ ତାକୁ, ହୁଏ ତ ସେ ମୋ ପାଇଁ ମୁହଁଟେ ହେଲେ ଭାବ ନାହିଁ ।

ଏହିପରି କେତେଥର ମୁଁ କରିଛି ଜାଣି ଜାଣି, ଯେତେବେଳେ ଏ ପାଖକୁ ସେ ଚାହିଁଛି, ସେତେବେଳେ ଘଡ଼ିଘଡ଼ି ପରି ମୁହଁ କରି ମୋର ମୁଁ ଏଣେ ତେଣେ ଚାହିଁଛି ।

ସେ ରୁଷ୍ଟ, ମୁଁ ଅଭିମାନ କରିଛି ।

* * *

କାଲି ନିଛାଟିଆ ରାତିରେ, କେହି ଯେତେବେଳେ କୁଆଡ଼େ ନାହିଁ, ଯେତେବେଳେ ମୋର ଘରପାଖେ, ଛଳେ ଉପରେ, ଭିତରେ ବାହାରେ, ବୁଲାଚଲା କରୁଛନ୍ତି ଖାଲି ମୋର ନିଜର ଚିନ୍ତା. ନିଛାଟିଆ ରାତିରେ ମୋର ଅଭିମାନ ତରଳିଯାଇ ହୋଇଛି ନୀରବ ବେଦନା ।

ମୋ ହୃଦୟ ଅନୁତାପ କରିଛି, କାହିଁକି ମୁଁ ତାକୁ ଅବହେଳା କଲି । କିଏ ଯେପରି କର୍ଣ୍ଣପିଶାଚୀ ପରି କାନେ କାନେ ମୋତେ କହିଯାଉଛି, ମୋର ଭୁଲ୍, ଭୁଲ୍, ଭୁଲ୍ ।

ଝରକା ପାଖକୁ ଉଠିଆସି ପଦାକୁ ଚାହିଁଛି ।

ନୀରବତା ଭିତରେ କାହାର ପ୍ରାଣ ଭାସିଆସିଛି ପବନରେ । ଦୁଃଖରେ ସୁଖ ଅଡ଼ୁଆ ହୋଇ ମିଶିଯାଇଛି । ସ୍ଥିର ହୋଇ ଆସି ଶୋଇଛି, ମନେ ମନେ ଗୋଟି ଗୋଟି କରି ଉପାଦାନ ଆହରି ଚେଷ୍ଟା କରୁଛି ଗୋଟିଏ ସୁନ୍ଦର ସ୍ୱପ୍ନ ଗଢ଼ିବାକୁ...... ।

କଣ ଯେ ସବୁ ଗୋଳମାଳ ହୋଇଗଲା.....ତା ପରେ କିଛି ଠିକଣା କରି ଗଢ଼ିପାରିଲି ନାହିଁ, ଆସିଲା ନିଦ ।

·· ·· ସେ ଶୋଇଛି, ଏକୁଟିଆ । ଜହ୍ନଆଲୁଅ ତାର ମୁହଁ ଉପରେ ନାଚୁଛି । ମୁକୁଳା ହୋଇ ପଡ଼ୁଛି ତାର କେଶ—ସ୍ଥିର, ଶାନ୍ତ, ସୁନ୍ଦର, ପୂର୍ଣ୍ଣ, ନିଶ୍ୱାସ ବନ୍ଦ କରି ଚାହାଁର ମୁହଁ ଉପରେ ନଇଁପଡ଼ି ରହିଛି ।

ନିଦ ଭାଙ୍ଗିଗଲା । ଦେଖିଲି, ଜହ୍ନ ଆଲୁଅ ଝରକା ବାଟେ ମଣି ମୋ ମୁହଁ ଉପରେ ପଡ଼ୁଛି । ଆଖି ଜଳକା ହୋଇଗଲା, ଚାରିଆଡ଼ କିପରି ବିଷଣ୍ଣ ଲାଗିଲା । ଯାହା ହଜିଯାଇଛି, ଆଉ ମିଳିବ ନାହିଁ । ସେ ଚାଲିଯାଇଛି, ଆଉ ଫେରିବ ନାହିଁ । ଯାହା ଭାଙ୍ଗିଛି, ଯାହା ଯାଇଛି······

ପୁଣି ଶୋଇପଡ଼ିଲି କାଠ ପରି ।

ଏହିପରି । ଭାବିଲି, କିଛି ଲେଖେଁ, କିନ୍ତୁ କିଛି ଲେଖି ପାରିଲି ନାହିଁ ।

ରହିବା, ନ ରହିବା, ଭାବିବା, ନ ଭାବିବା, ଦେଖିବା, ନ ଦେଖିବା, ଏହିଥିରେ ସମସ୍ତ ଗଲା ଚାଲି ।

ତା ପରେ ସେ ଦିନ । ସଞ୍ଜବୁଡ଼େ ରହି ଦେଖିଲି ଚାରିଆଡ଼େ ଧୂଳି ଧୂଳିସ୍ଥୂଳ ପଡ଼ିଯାଇଛି । ଯିବା ଆସିବା, ନେବା ଅଣିବା, ସମସ୍ତେ ଯେପରି ଭାରି କାର୍ଯ୍ୟରେ ବ୍ୟସ୍ତ । ତଳେ ତିନି ଖଣ୍ଡି ଗାଡ଼ି, ଯିବାଆସିବା ଡାକହାକ ପଡ଼ିଯାଇଛି । କେତେ ଲୋକ ଗହଳି ଭିତରେ ସେ ଘରେ ଦେଖିଲି ସେ ଝିଅଟି ଧପା ଲୁଗା ଜାମା ପିନ୍ଧିଛି, ମୁଣ୍ଡ ବାନ୍ଧିଛି, ବେଳେ ବେଳେ ଯାଉଛି ଆସୁଛି ।

ତା ପରେ ସମସ୍ତେ ସେ ଘରୁ ଚାଲିଗଲେ । ତଳେ ଦେଖିଲି, ତା ଉଜ୍ଜ୍ୱଳ ଜୀବନଟପରି ବୁଢ଼ା ଲାଗୁଛି, ସେ ଯେପରି ବିପୁଳକାନ୍ତ ।

କିଛି ସମୟ ଗଲା । ସେ ଆସିଲା । କେଡ଼େ ସୁନ୍ଦର ଦିଶୁଛି ସେ; କିନ୍ତୁ ମୁହଁରେ ଯେପରି କେଉଁ ଚିନ୍ତାର ଛାଇ । ଆଜି ଦିନ ପରି

ନୁହେଁ, ଜଣ ଯେପରି ଅଧିକ । ଝରକା ପାଖକୁ ସେ ଆସିଲା; ଅଧା ବାଟ ଦେଇ ଉହୁଁକ ପଡ଼ି ରହିଲା, ଉହୁଁକ ପଡ଼ି ରହିଲା ମତେ ଚାହିଁ ରହିଲା ସିଧା ।

ପରିପାଟି ବେଶ, ଏତେ ସରିପାଟି ମୁଁ ତାକୁ କେବେ ଦେଖି ନାହିଁ । ମନରେ ମୋର ଗୋଟିଏ ଚୁଟିଲା । ଭଲ ଲାଗିଲା ନାହିଁ କାହିଁକି ।

ରହିଁରହିଲା ସ୍ଥିର ହୋଇ । ବଜ୍ରଳ ପରି କେତେ ଭାବ ଆସି ଖେଳି ଯାଉଥାଏ ତାର ମୁହଁ ଉପରେ । ନାକ ଫୁଲି ଉଠୁଥାଏ ରହି ରହି । କପାଳ ଝାଉଁଳ ପଡ଼ୁଥାଏ । ଗମ୍ଭୀର କଳା କଳ, କୋହଳ ଯୋଡ଼ିକ ବାନ୍ଧ ରଖିଥାଏ କନ୍ଦୁଣର ସ୍ମୃତି ।

ତାର ଆଖିକୁ ଚାହିଁ ବୁଝିନେଲି ସବୁ । ବିଦାୟ ସଞ୍ଜର ମନ-ଆଉଟା ଗୁଡ଼ ... ... ...

ତା ପରେ ତାର ଦୁଇ ଆଖି ଟପି ଝରିପଡ଼ିଲା ଦୁଇ ଟୋପା ଲୁହ ।

* * *

ସେ ଚାଲିଗଲା ।

ଆସିଲା ଅନ୍ଧାର ।

ବାହା ଉପରେ ମୁଣ୍ଡକୁ ମାଡ଼ି କେତେ ସମୟ ବସିପଡ଼ିଲି ମୁଁ ଜାଣେ ନାହିଁ । ମୁହଁ ଉଠାଇ ଅନ୍ଧାର ଭିତରେ ସେ ଝରକାକୁ ଚାହିଁରହିଲି । ଅବଶ ମନରେ ଚାହିଁରହିଲି ।

"ଏଇ ବିଦାୟ ବେଳେ ସ୍ୱୀକାର କରିଗଲାକୁ ଦେଲ ମିଳନ ମୋର ଭଲ ପାଇବାର ପ୍ରତିଦାନ ?

"ଏଇ ବଦାୟୁ ବେଳେ।"

ଅନ୍ଧାର ଆକାଶକୁ ଅନ୍ୟମନସ୍କ ହୋଇ ଚାହିଁରହିଲି କେତେ-ବେଳ ତାରଗୁଡ଼ାକ ଆଡ଼କୁ ।

ଚେଏଙ୍କ ଆସିଲା ଶୁଣିଲି, ଯେତେବେଳେ ରେଲ ଚାଲିଥିବାର ଘଡ଼୍ ଘଡ଼ଡ଼-ଘଡ଼୍ ।

ଘୁଣ୍ଟଏ ଘୁଣ୍ଟଏ ଅନୁଭବ କଲି, ମୋର ଘୁଣ୍ଟଫାଡ଼ ଗୁଡ଼ାଙ୍କ ଚୂନା କରି ଚାଲିଗଲା ରେଲଗାଡ଼ି ।

ଝରକାଟା କରିଦେଲି ବନ୍ଦ, ଧଡ଼୍ କରି ।

—o—

## ପ୍ରତଦାନ

ଝଳ ଝଳ ଗ୍ଭଲିଛନ୍ତି ଇନ୍ଦ୍ରନାଥ, ପାଦକୁ ଧୋଯାଉ ଯୋସ.ର ବଡ଼ ସହରର ବାରୂପଣ ସେ ଅତିକ୍ରମ କରି ସାରିଲେଣି । ପାର୍କ ପାଖେ ଶୀଭୁଆ ପବନ, ଝକ ଝକ ବିଜୁଳି ଆଲୁଅ ସହରର ନନ୍ତ ବେଷନର ମଜ୍ଜିଛବ । ରେଡ଼ିଓ ବାଜୁଛି, ମଝରେ ଗ୍ଭଲୁଛି ହର୍ଣ୍ଣ ଫୁକି ଫୁଙ୍କ, ଦଳ ଦଳ ଲୋକ, ଦମ୍ଭ ପାଦ, ମପା ଚୂପ ଗ୍ଭଲରେ ଉଦ୍ଦେଶ୍ୟର ସଂକେତ, ଜଳନ୍ତ ଜୀବନର ପରିଚୟ, ସଂଘାତ ଭିତରେ କଲେ-ବଲେ-କୌଶଳେ ଜୀବନକୁ ଉପଭୋଗ କରିବାକୁ ଦୃଢ଼ ପ୍ରତିଜ୍ଞା, କାଲୁବାଲୁ ମଣିଷ ଗ୍ଭଲିଯାଉଛନ୍ତି ଠକ୍-ଠ.କ୍, ମଚ୍ ମାଚ୍ . ମଚ୍-ମାଚ୍ ।

ପାର୍କର ଗୋଟାଏ ବେଞ୍ଚ ଉପରେ ଅଜାଡ଼ ହୋଇ ପରି ଆଉଜ ହୋଇ ଇନ୍ଦ୍ରନାଥ ବିହ୍ୱଳ ହୋଇ ଚାହିଁଲେ ଦୋକାନଗୁଡ଼ାକୁ, ମଣିଷଗୁଡ଼ାକୁ । ନା — କେହି ଅଟକି ରହୁନାହିଁ, ବିନା ଉଦ୍ଦେଶ୍ୟରେ ପାଦେ ବଢ଼ୋଉ ନାହିଁ କେହି । କିନିଷ ଦେଖା ହେଲା, କିନିଷ କିଣା ହେଲା, କିନିଷ ପସନ୍ଦ ହେଲା ନାହିଁ, ଯାହା ହେଉ ଦେ ଚଲ୍, ଦେ ଚଲ୍ । ଖବରକାଗଜବାଲା, ସେ ତ ଚଳନ୍ତ ମୂର୍ତ୍ତି ଖଣ୍ଡେ, ଏ ପାଖ ସେ ପାଖ ସେ ପାଖ ଏ ପାଖ ଚାଲିଲା । ମଳରୁ ମଳ ହତଭଗା ଭିକାରୀ ଯେ, ଖୋଡ଼ା, ଲେଂଙ୍ଗ୍ଡା, ଅନ୍ଧ, ଚାର ବ ସ୍ଥାନକାଳର ପୁଚ୍ଛା ହୋଇ ଅଛି, ସେ ବି ଉଦ୍ଦେଶ୍ୟ

ମୂର୍ତ୍ତିମନ୍ତ । ଖୋଲା ହାତ ବୁଲାଇଚିଛି, ଦେଖି ପକେଟ ପାଖେ, ମିଳିଗଲେ ସେ ଆଗକୁ ଚାଲିଲା । ଯେପରି ନ କେନ୍ଦ୍ରରେ କେଉଁଠି ଯୋଜନାର ବୃଦ୍ଧି ନିହିତ ଅଛି, ତାହାର କଣ୍ଣେଇନାତ ଏହି ଧୂରନ୍ତା ସହରର ଦୃଶ୍ୟ ଓ କାରବାର, ତଥାପି କଣ୍ଣେଇ ହସୁଛି କେତେ ସଜୀବ, କେତେ ପ୍ରାଣବନ୍ତ !

ଆଜି ସେ !

ଘାବବାକୁ ତାର ଶକ୍ତି ନାହିଁ, ହୁଗୁଳା ମୁଠାରୁ ଖସିପଡ଼ୁଛି ବେଳକାଳ ଚେତନାର ରଶି, ନମୂନିବ ଜୀବନ ସତ୍ତ୍ୱ ତାର ଡୋର କଟିଯାଉଛି, ସେ ବକ୍ରାଠା ଢୁଙ୍କ ।

ଶୀତୁଆ ପବନରେ ମୁଣ୍ଡ ଅଳ୍ପ ଥଣ୍ଡା ହେଲା, କାନ ପାଖେ ଗୁଣ୍ଠ ମ ଶ ସେ ଟେଟେଇ ଦେବାକୁ ଚାହେଁ—ପ ଦତଲେ ମାନି ।

ଇନ୍ଦ୍ରନାଥ ଆଜି ଜୀବନରେ ପ୍ରଥମ ଥର ଅନୁଭବ କଲା, ତାକୁ ଭୋକ କରୁଛି । ଦିନଯାକ ଉପାସ ଅଛି ସେ, କାଲି ବି ପ୍ରାୟ ସେହିପରି, ସେ ଆହାର ଛାଡ଼ିଲାଣି ।

ଦୁର୍ଦ୍ଦଶା ଭିତରେ ଉଲ୍ଲାସରେ ସେ ଅନୁଭବ କଲା, କରୁ ଭୋକ, ଯାଉ ଦେହ, ଝଡ଼ିପଡ଼ୁ ଏ, ଭଲ । ସାତ ଦିନରେ ସେ ମଲୁ ପରି ଝଡ଼ିଯାଇଛି, ପାଚଲ ପରି ଫୁଲିଗଲା ଧୂଳିଆ ତାର ମୁଣ୍ଡ-ବାଳ, କୋରଡ଼ ଆଖି ଓ ଝେଲିରୁଡ଼ ଗଢ଼ି ଦେଲାଣି ଏକ ଅଦ୍ଭୁତ ନବ ରୂପ, ଶିର ବାହାରିଲାଣି, ଦେହମସ୍ତ ଗଣ୍ଠି ଗଣ୍ଠି ହାଡ଼ ହାଡ଼ । ତାର ପୋଷାକ, ଛିଣ୍ଡା କୋଟର; ତଳିକି ନିଦା ନାହିଁ । ପୃଥି ଗୁଡ଼ ଭିତରେ ଉଠିଆସୁଛି ସେ ଦମକା ତୋଫାନ, ଗୁଡ଼ ଫମ୍ପା କରି ହଠାତ୍ କଣ ଆଖିକି ଉଠିଲା ପରି ଅନୁଭୂତ । ଇନ୍ଦ୍ରନାଥ ଆକାଶକୁ ମୁହଁ ଟେକିଲା । ଝର ଝର ଲୁହ ସଙ୍ଗେ ସଙ୍ଗେ ପାଟି କେମିତି ଆପେ ଆପେ କହିଲା—"ଓଃ, ଏଇ କଣ ଭଲ ପାଇବା ! କି କଷ୍ଟ,

କ କଷ୍ଟ !" ଭାବିଲା, ଏଇ କଣ ଶେଷ ! ଭାବି ହେଉନାହିଁ, ଭାବିଲା ବେଳକୁ ଛାତି ଫାଟିଯାଇ ଆଖିରେ ଦିଶୁଛି ଅନ୍ଧାର, ମନେ ମନେ ସେ ମରୁଛି; ଯାତନା ଦେବାକୁ ଅଛି ଦେହ

ଧୂଳି ହେଉଥିବା ମରମ ଭିତରୁ ଖଣ୍ଡ ଖଣ୍ଡ ଚିନ୍ତା ଏକଠି କରି ସେ ବସି ଲାଗିଲା କାରଣ ଓ ଫଳ ପ୍ରକରଣରେ ।

ହେଉ ନାହିଁ, ପୁଣି ଛାତି ସଙ୍କୁଚିତ ହୋଇ ଆସୁଛି···ବିଦାୟ, ବିଦାୟ, ବିଦାୟ । ହୃଦୟକୁ ହାଣି ପକାଉଛି, ଉପମା ସେ ନୁହେଁ; ପ୍ରକୃତ ଦେହକଷ୍ଟର ଗୋଟାଏ ପ୍ରକାର ଦୁଃଖ । ମୁଣ୍ଡ ଭିତରେ ଅହରହ ବାଜି ରହିଛି ଗୋଟାଏ ହତାଶୀ କାନ୍ଦୁରା ଗ୍ରାମୋଫୋନ୍ ରେକର୍ଡ଼—

'ଶଶୀ ତାରକିତ ନିଶୀଥ ଶୟନେ
ଚମ୍ନୁ ଚମକିତ ସପନେ ଗୋ—"

ଯେତେଥର ଶୁଣେ ତାକୁ କାନ୍ଦ ମାଡ଼େ, କାହିଁକି ସେ ଜାଣେ ନାହିଁ ।

ଶହେ ଥର ପରେ ଶହେ ଏକ ଥର ଇନ୍ଦ୍ରନାଥ ଭାବି ଲାଗିଲା— କଣ୍ଟକିତ ହତାଶାର ବିଶ୍ଳେଷଣ ଆତ୍ମଘାତୀ ଆନନ୍ଦ ଦିଏ ତାର ମନକୁ । ଲୁହ ଝରାଇ ମନକୁ ମନ ସେ ଗୁଣି ହୁଏ ।

ବଡ଼ ବଡ଼ ଲୁମ ଥିଲା ଭାଲୁ ପରି ଟମି କୁକୁର, ତା'ର ଗୋଲ ମୁହଁଟି ନାଲି ଜିଭ କାଢ଼ି ଦି ଗୋଡ଼ ଟେକି ଦେଇ ସେ ମୁହଁକୁ ଅନାଏଁ । ପଛେ ପଛେ ଛଉକା ଚୀନା ବିରାଡ଼ି ତରକି ରହିଁଥାଏ ।

ଅଃ· ବିରହ ! ଭଙ୍ଗା ଛାତିର ଝିମି ଝିମି ସଙ୍ଗୀତ ଗଢ଼ି ହୋଇ ଯାଏ ସେହି ଅଙ୍ଗ ନିଖୁତ ରୂପ, ହସି ହସି ନାଚିଲା ପରି ସେ ଆସେ, ଅଣ୍ଟାରେ ଗୁଡ଼ା ହୋଇଥିବା ପଣତ ପିଠିପଡ଼ି ତଳେ ଘୁସୁରେ— ଟମି କୁକୁରର ପିଠି ଆଉଁସି କହେ—"ଆପଣ ."

ଇନ୍ଦ୍ରନାଥ ଟମି କୁକୁରର ପିଠି ଆଉଁସେ, ଅମଳା ଆଉଁସେ; ଆଉଁସୁ ଆଉଁସୁ ହାତ ଦ'ଟା ପଡ଼ ରହେ ତାକ ଉପର ।

ଅମଳାର ଓଠ ଥର ଉଠେ, କପାଳରେ ଝାଳ ଫୁଟେ, ଚରଚର ହୋଇ ଏଣିକ ତେଣିକ ଗୃହିଁ ସେ ହସିଦିଏ । ଫୁଲ ଫୁଲ ହସେ, କହେ, "ମେମିତ କଣ ଗୃହିଁଛନ୍ତି, ଆସନ୍ତୁ ।"

ଛଉଳା ଚୀନା ବିରାଡ଼ି ତାର ଗୋଡ଼ରେ ଘସି ହୋଇ ମେଉଁ ହୁଏ, ଅମଳା ତାକୁ ଗୋଟେଇ ନେଇ କୋଡ଼ରେ ପୂରାଇ ଠିଆହୁଏ, ପିଲକୁ ସାଉଁଟି ଧରିଲ ପରି ଚ୍ଚପି ଧରି ଗେଲ କରେ, ଇନ୍ଦ୍ରନାଥ ଛଡ଼ାଏ । ଦେହରେ ବିଜୁଳି ଖେଳେ । ଚୀନଦେଶର ବିରାଡ଼ି ଆଖି ବୁଜି ପଡ଼ିରହେ ତୁଳା ମେଞ୍ଚାଏ ପରି, ଛଡ଼ାଛଡ଼ି ହୋଇ ଯକାହୁଏ ଏ କୋଡ଼ରୁ ସେ କୋଡ଼ ।

ଉଃ ! ପୁଣି ତାର ମୁଣ୍ଡ ବୁଲେଇ ଦେଉଛି ।

ସମାଜ ବାଧା ଦେଉଛି, ନିଷ୍ଠୁର ଅବୁଝ ତାର ବିଧାନ, ଚଳେ ନୂଏଁ ନାହିଁ, ନରମେ ନାହିଁ । ବାଟ ବନ୍ଦ । ଅମଳା ତାର ହେବ ନାହିଁ ହେବ କାହାର ?

ପୁଣି ବିଣିଯାଉଛି ଗୋଟିଏ କୋଠରୀର ଭିତର, ଜଳା ବାଟେ ଶିମ୍ବଲଟା ଭିତରକୁ ପଶିଆସି ଧରିଛି ପେନ୍ଥାଏ ଫୁଲ, ମୁରଣରେ ଉଏଁ ପୁଣି ଅମଳା । ଟେବୁଲ ପାଖେ । କାଗଜରେ ଚିତ୍ର କରିଛି ନାଲିନେଳି ପେନ୍‌ସିଲରେ ଗୋଟାଏ ସାଙ୍କେତିକ ମନୋ-ଗ୍ରାମ୍ 'ଆଇ'-'ଏ' ଛନ୍ଦାଛନ୍ଦ ନାଗପାଶରେ । "ସିଏ କଣ ଅମଳା ?"

"କିଛି ନାହିଁ ।"

ଟେବଲ ଉପରେ ମାଡ଼ ହୋଇ ମୁହଁ ମାଡ଼ିବସି ରହିଛି, ବେଳ କଟେଇବା ଖାଲି ଅନୁଭୂତିକୁ ବଢ଼ାଇ ରଖିବା, କାହାର ଦୁନିଆଁ

ଶୁଣିବା ପାଇଁ କୁଣ୍ଡରେ କଣ କଥାଭାଷା ହୋଇଛନ୍ତି ତା ଆଉ ମନେ ନାହିଁ ।

"ତୁମେ ମୋର, ମୁଁ ତୁମର; ସବୁଦିନେ –"

ଦୁହେଁ ଶପଥ କରିଥିଲେ । ଶପଥ ଉପରେ ଗଢ଼ି ଲାଗିଥିଲା ସପନ ସଉଧ, ସ୍ୱାଧୀନ ଜୀବନର ପରିକଳ୍ପନା ।

କିନ୍ତୁ ସଂସାର ବୁଝେ ନାହିଁ ପ୍ରେମ, ତେଣୁ ତାର ସ୍ଥାନ କବରର କବାଟରେ । ସଂସାର ତାଙ୍କୁ ଦେଖିଥିଲା ଦୁଇଟା ବୁଢ଼ୀ ବିଧବାଙ୍କ କୁଟିଳ ଆଖିରେ । ପଡ଼ିଆ ମା ବାରମ୍ବାର ନିଆଁ ମାଗି ଆସି ଗୁହାଁ ଦେଇ ତୁଙ୍କାକୁ ଡାକେ ଲମ୍ବ ଡେଙ୍ଗା ପକାଇ ବଙ୍କେଇ ବଙ୍କେଇ ଧାଇଁ ପଳାଏ । ମା'ଦେଈ ଦେଠା ନୂଆ ମାଗି ଆସେ, ଫୁଲଠି ସେ ପୋକ ଦେଖିବାକୁ ପ୍ରତ୍ୟାଶା କରେ, ତେଣୁ ନିଜେ ଅନ୍ୱେଷି ଯୋଗପାଏ ତାର ପୋକର କାହାଣୀ । କଣ୍ଠାବାଡ଼ ଘେରା ସ୍ୱତନ୍ତ୍ର ସମାଜ ଦୁଇଟା, ସଂସାର ହଟା କଲା, ପ୍ରତିବନ୍ଧକ ପାଇ ମୂଳ ହୋଇ ଇନ୍ଦ୍ରନାଥର ପ୍ରେମ ଉଷୋରପଣ ହାରି ଅଣିଲା ତା ପାଇଁ ଚରମ ବ୍ୟର୍ଥତାର ଅନୁଭୂତି । ଅମଳା ବିନା ଖାଦ୍ୟରେ ସ୍ୱାଦ ନାହିଁ, ଦିନରେ ଆଲୁଅ ନାହିଁ, ଜୀବନରେ ପରାଗ ନାହିଁ । ବଞ୍ଚିବା ଅସମ୍ଭବ, ନିତାନ୍ତ ଅସମ୍ଭବ ।

ଆପଣା ହାତରେ ଅପଣା ବାଳ ଓଟାରି ଓଟାରି ଅପଣାକୁ ଭିଡ଼ି ଟେକିନେଇ ବୁଝିଲା ଇନ୍ଦ୍ରନାଥ । ହାତରେ ଦମ୍ଭ ପେଶି, ମୁଣ୍ଡ ଭିତର ଦପ ଦପ ହେଉଛି । ଓଠ ଶୁଖି ଶୁଣ୍ଢି ଲାଗିଛି, ନିଭୃତରେ ନିଜକୁ ସେ କଷ୍ଟ ଦେଲେ ଆନନ୍ଦ ପାଏ । କଣ କେମିତି ହୋଇଯାଉଛି । ଭାବନାର ଦଶ ବର୍ଷରେ ମୂକ ହେଲେ ହୋଇ ମୋହିଁ ପାଉଛି ଦେହେ ଅନେକ । ସେ ତୁମ ସେଥା ନିଶ୍ଚେ ମୁହିଁ

ଲୁଚେଇ ଦୂରେଇ ସେ ବୁଲୁଛି । ଚତ୍ଥା ବ୍ୟକ୍ତିଭିର ପାଙ୍ଗେ ପାଙ୍ଗେ ଲଗି ରହିଛି ସେହି ଗ୍ରାମୋଫୋନ ରେକର୍ଡ଼ର ବାଜଣା । ଛନ୍ଦେ ଛନ୍ଦେ—

"ଶଶୀ ତାରକତ ନଶୀଥ ସ୍ୱପନେ--"

ନୂଆ ଆକାଂକ୍ଷା ଆସୁଛି—ନୂଆ କଥା କରିବାକୁ ଇଛା ହେଉଛି । ଏହି ନଇନ୍‌କୋଣରେ ଯେଉଁ ପଙ୍କ ଅଛି—କେଉଁ ଥନ୍ତା ଅବ ସେ—ଓଃ ଜ୍ୱାଳା—ଜ୍ୱାଳା—

କଏ ଆସୁଛି ?

ଏ ଜଣେ ସ୍ୱାଙ୍ଗ ପ୍ରଫେସର, ରଜେନ୍ଦ୍ର ବାବୁ ।

"କଏ ଇନ୍ଦ୍ରନାଥ ନା, ତୁମେ ଏଠି ?"

ଧରବ ମେ ଧରବ, ଧାଁ-ଧାଁ-ଧାଁ । ସାମନାରେ ଅନ୍ଧାରଗଳି ।

ପଛଆଡ଼ୁ କଏ ସବୁ ଗୋଡ଼େଇ ଆସିଲା ପରି ଶୁଭୁଛି, କୁକୁର ପଲେ ଭୁକଭୁକକା ଧାଇଁଲେଣି । ଦୁର୍ଦ୍ଧର୍ଷ କଟଡ଼ା ! ଅନ୍ଧ ଗଳି ଛୁଡ଼ଗଲା । ଜଣକ ପିଣ୍ଡାରେ ଅନ୍ଧାରରେ ହାମୁଡ଼େଇ ପଡ଼ି ରହିଲା ଇନ୍ଦ୍ରନାଥ । କୁକୁରକୁ ମାରିବାକୁ ଉଠେଇଲେ କୁକୁର ଉପର ନେଉଟେଇ ପଡ଼େ ସେହିପରି । ଆଁ-କଲା ପାଟିରେ ବସ୍ତ ଅଡ଼କୁ ଗୋଟାଏ ଭ୍ରୁକୁଟୀ । କଏ ସବୁ ଯାଉଛନ୍ତି । ରିକ୍‌ସାଟାଏ ଚାଲିଛି ଠଣ ଠଣ ଝଣ ଝଣ କରି । ତାର କ ଯାଏ ? ସଂସାର ତାର ଧ୍ୱଂସ ହୋଇଯାଉଛି । ତାର ଶତ୍ରୁ । ଈଶ୍ୱର ତାକୁ ପରିତ୍ୟାଗ କରିଛନ୍ତି । ଓଃ କ କଷ୍ଟ ! କ କଷ୍ଟ ! ସତେ ଅମଳା ତାର ହେବ ନାହିଁ ! ଶଶୀ— ତା-ର-କ-ତ-ନି-ଶୀ-ଥ- ପେଟରୁ ଲୁହ ବାହାରି କୋହର ତୋଫାନ ଉଠି ଆସିଲା । ହବଲ, ଏଇ ରାସ୍ତାରେ ଏମିତି ବୁଲିଗୋଡ଼ଆ ହୋଇ ଫଣ୍ଡିଆ କଡ଼ୁଣୀ ଖଣ୍ଡିଆ ଆଣ୍ଠୁରେ ବୁଲିବୁଲି

କାନ୍ଦ କାନ୍ଦ ସେ ଗଲେ ଅମଳା ଘରକୁ । କହିବ "ଅମଳା, ମୁଁ ଆସିଛି ।" ସେଇଥିପାଇଁ ଦ' ପାହାଚ ଡେଇଁକରି ଆସିଲେ ସେ ମନ୍ଦିର ତଳକୁ ।

ହଠାତ୍ ସେ ଭାବିଲେ—ମୁଁ କଣ ପାଗଳ ହେଉଛି ? ରାସ୍ତା ଧୂଳିରେ ବସି ପଡ଼ି ସେ ଭାବିଲେ, "ମୁଁ କଣ ପାଗଳ ? ଏଁ ପାଗଳ ? ରାସ୍ତାରେ ଦୁଇ ପାଖକୁ ଉଦାସେଇ ସେ ବସି ରହିଲେ—'ମିଛ କଥା ପଡ଼ିଆରେ ହାତ ମାଡ଼ି ବସି ରହି କେବେ ସେ ଦେଖିଥିଲେ ଅମଳାକୁ ? ଏଇ ଭଲ, ଏଇ ଭଲ, ବେଶ୍ । ଦୁନିଆଁକୁ ସେ ଖାତିର କରେ ନାହିଁ । ମୁଣ୍ଡ ଝିମି ଝିମି ହୋଇଯାଉଛି । ଦୁର୍ବଳ ଦେହରେ ଅନୁଭବ କଲେ କ୍ଳାନ୍ତି, ତାର ହଦ ଧଡ଼କାଟ, ଏଇଟି ସେ ଶୋଇବ ।

ଧଡ଼ପଡ଼ ହୋଇ ଠିଆ ହୋଇ ଚାଲିଲେ ସେ ଭାବି ଭାବି ଯେ ସେ ପାଗଳ ହୋଇଯାଉଛି । ସେ ଇନ୍ଦ୍ରନାଥ, ପ୍ରଫେସର ଇନ୍ଦ୍ରନାଥ, ବଳାତ ଯିବାର ଅଛି—ଆଶା ଥିଲା, ପୃଥିବୀ ବନ୍ଦ୍ୟ ତ ହେବ ବୋଲି ! କଣ ହେବ ଆଜି ! କିନ୍ତୁ ସେ ପାଗଳ ହେବ ନାହିଁ - ରାସ୍ତା କଡ଼ରେ ଦେଖିଥିବା ପାଗଳଙ୍କ ଅବସ୍ଥା ସ୍ମରଣେ ଆସିଲା, ଦେହ ଶୀତେଇ ଉଠିଲା ଘୃଣାରେ । ଦୁଇ ହାତରେ ମୁଣ୍ଡକୁ ମାଡ଼ି ଧରି ଟଳି ଟଳି ଗଲେ ଭୂଷୁରୁ ଭୂଷୁରୁ ହୋଇ- 'ଉଃ ! ଅମଳା । ଏଇ କଣ ପ୍ରେମର ପରିଣତି ?"

ଚଇତର ହୋଇ ଚାଲିଲେ । ଶିକ୍ଷିତ ମନର ଭାଙ୍ଗି ପଡ଼ିଥିବା ଚାଆସ ଘରେ ଗୋଟାଏ ଅଭଙ୍ଗା ଜିଦ—ମରିବ ସେ, କିନ୍ତୁ ପାଗଳ ହେବ ନାହିଁ ।

ଏଇ ଅମଳାର ଘର ।

ଛିଣ୍ଡା କାମିଜ ଲହୁ ଲୁହାଣ ଧୂଳି ଧୂସର ଶୀର୍ଣ୍ଣ ଦେହ, ଇନ୍ଦ୍ରନାଥ ଠିଆ ହୋଇଛି । ଠକ ଠକ ଥରୁଛି ଅନ୍ଧାରରେ ।

ଚୁପଚାପ ।

ଜାନ ଘାଁ ଘାଁ ବନ୍ଦ ହୋଇ ଆସିଲା, ସଙ୍ଗୀତ ପରି ଲାଗୁଛି ।

ବାଘ ଦେଖୁଛି, ଅମଳା ହାର୍ମୋନିଅମ ବଜାଇ ଗୀତ ଗାଉଛି । ଦୂର କୋଣରେ ବ ଜନ୍ ଟାଂ ଟାଂ ହୋଇ ଦଶଟା ।

ଗୀତ ବନ୍ଦ ହେଲା, ହଠାତ୍ ହୋ ହୋ ହସ ।

ବାଘ ଦେଖୁଛି । ଆଉ ଜଣେ କାହାର ଛାଡି ।

କବାଟ ଫିଟିଲା, ଅମଳା ହସୁଛି, ଆଉ ଜଣେ ହସୁଛି ।

ଘରଲୋକେ ପଡ଼ିଲେ ଚିହ୍ନିଲେ, ନଲ୍ ଟଣ ଧରି ଅମଳା ବାହାରୁଛି । ଧୂଦର ଶାଢ଼ୀ ପିନ୍ଧିଛି, ନେଳ ଉଲ୍ ର ବ୍ଲାଉଜ ପିନ୍ଧିଛି, ତାର ସାମନାରେ ଜଣେ ଡେଙ୍ଗା ଲୋକ । ଅମଳା ଉଜୁଆଳରେ ନଲ୍ ଟଣ ରଖି ଠିଆ ହେଲା, କହିଲା "ନମସ୍କାର, ଆଳି ଆସିବେ ଟି ?"

ଡେଙ୍ଗା ଲୋକଟି ଅମଳାର ହାତ ଧରି ଟାଣିନେଲା, "ଟିକେ ଆସ, ଟିକେ—" ହଠାତ୍ ସୋଡ଼ା ବୋତଲ ଖୋଲିଲା ପରି ଗ୍ଲାସରେ ଅନ୍ଧାର ଭରି ଗୋଟାଏ ଶବ୍ଦ । ଅମଳା କହିଲା—"ଧାତ୍, ତୁମେ ଦୁଷ୍ଟ !"

ଡେଙ୍ଗା ଲୋକଟି ଆଉ କଣ କହିଦେଇ ସିଟି ମାରି ମାରି ସାଇକେଲରେ ବସିଲା । ଅମଳା ହସି ହସି ଗଡ଼ିଲା, ଏକାଠି ସେପରି କ ମୁର୍ଗୀ ପୁଞ୍ଜିଏ ବୋବେଇ ଉଠୁଛନ୍ତି । ଧଡ଼୍ କନା କବାଟ ବନ୍ଦ ହେଲା ।

ଛନ୍ଦନ ଥର ମୁଣ୍ଡ ବୁଲେଇ ଦେଲା । ଉଷ୍ଟବନ୍ ପାଖରେ ନଳ ଟଣବନ୍ଧନ ନଲ୍ ଟଣ ଖୁଣ୍ଟକୁ ଦୁଇ ହାତରେ ମାଡ଼ିକରି ସେ ଧରିଲା, ଜୋର୍ ସେ ।

ମୁଣ୍ଡ ଟେକଲ, ଘରଟା ସାମ୍ନାରେ, ଅନ୍ଧାରରେ କବାଟ ବାର ଦେଉନାହିଁ । ମୁଣ୍ଡର ଝିମଝିମ ବନ୍ଦ ହୋଇଛି । ଶୀତ କରୁଛି, ଦୁର୍ବଳ ଲଗୁଛି । ସେ ଇନ୍ଦ୍ରନାଥ; ପ୍ରଫେସର ଇନ୍ଦ୍ରନାଥ । କୁଆଡ଼େ ସେ ଆସିଥିଲ ? ଓ ! ଗମ୍ଭୀର ହୋଇ ମାଡ଼ି ପଡ଼ୁଛି ଆପଣାର ଆତ୍ମାଭିମାନ । ସେ ଆଇନ୍‌ଷ୍ଟାଇନ୍‌ର ଜାତି, ରମନର ଜାତି । କେତେ କାମ ତାର ! କେତେ ଦୂରରେ ଏଠୁ କଲେଜ !

ଧୀରେ ଧୀରେ ଚାଲିଗଲ । ଲଗିଲ—ସମାଜର ସେ ଗେହ୍ଲା ପୁଅ, ଭଗବାନ ତାର ସଙ୍ଗେ ସଙ୍ଗେ । ଝାଡ଼ିଝୁଡ଼ି ହୋଇ ମାଡ଼ି ଚାଲିଲ ରୋଗମୁକ୍ତ ପ୍ରଫେସର ଇନ୍ଦ୍ରନାଥ । ହେଉ ହେଲ, ସହରର ହୋଟେଲ ଖୋଲିଥିବ ।

---

# ଚା' କପେ

"ଚମ୍‌ଚମ୍ ରେସ୍ତୋରାଁ" ରେ ଚା' ଖାଉଛି ବସି ରମେଶ ।

ନାଁ 'ରେସ୍ତୋରାଁ' ହେଲେ ବି ସାଧାରଣ ଚା' ଜଳଖିଆ ଦୋକାନରୁ ଅଧିକା କିଛି ନୁହେଁ ସେ । ନାଁଟି ଅଦ୍ୟାପି "ଚମ୍‌ଚମ୍", ଦଶ ବର୍ଷ ପୂର୍ବେ ବି ଥିଲା ସେଇଆ, ଇଂରେଜୀରେ ତାର ବନାନ୍, ସି-ଏଚ-ୟୁ-ଏମ୍—ଚମ୍ ମାନେ—

ଯାଃ ଗଲା, ଚହଲି ଗଲା ଚା'ପାଣିଟି ଗୋଟାଏ ଦୀର୍ଘ-ଶ୍ୱାସର ଝାଙ୍କରେ ।

ସତେ ତ, ରମେଶ ଭାବୁଥିଲା, ସମୟ ! ଓଃ କି ଆଶ୍ଚର୍ଯ୍ୟ !

ଭାବିଲେ ଏବେ ଆଲୁଅ ବି ବାସି ହୋଇ ବାମ୍ଫ ହୋଇ ମଉଳି ଭସିଯାଏ, ତା ସଙ୍ଗେ ସଙ୍ଗେ ଆଖିରେ ଦେଖା ସ୍ଥୂଳ ପଦାର୍ଥ ଯେତେ ସବୁ ଖାଲି ଆଗକୁ ପଛକୁ କୁହୁଡ଼ି ପରି ଲହଡ଼ି ଭାଙ୍ଗେ— ଆଗ ନାହିଁ, ପଛ ନାହିଁ, ଖାଲି ଲହଡ଼ି । ତା ସହିତ ଲାଗି ରହିଥାଏ ଗୋଟାଏ ଯନ୍ତ୍ରଣାର ସୁର୍ ଗାଁ ଗାଁ—ଅଟଫୁଟା ।

ଥର ଥର ହାତରେ ଚା'ପାଣିଟି ଟେବୁଲ୍‌ରେ ଥୋଇ ରମେଶ, ଲଗାଇଲା ଗୋଟିଏ ସିଗାରେଟ୍, କଳରେ ତାଣ୍ଡ ପୂରେଇ ପଛକୁ ହାବଗଲା । ସତେ ତ— ଓଡ଼ିଶାର ଜଣେ ତରୁଣ ବୈଜ୍ଞାନିକ ନୂଆ ତଥ୍ୟ ପାଇଛନ୍ତି ଗବେଷଣାଦ୍ୱାରା, ଯେ ଶୂପର ଗୋଟିଏ ଅବସ୍ଥାରେ

ପହଞ୍ଚିଲେ ଜଡ଼ବସ୍ତୁ ତରଙ୍ଗ ହୋଇଯାଏ । ଏ ଯୁଗର ପ୍ରଧାନ ବସ୍ତୁସ୍ତୂକର ଆବିଷ୍କାର !

ଅନ୍ତ ସତ — ଶୂନ୍ୟ ଶୂନ୍ୟ ମହାଶୂନ୍ୟ —

ପଦାର୍ଥବିଜ୍ଞାନର ଅପଦାର୍ଥ ବିଜ୍ଞାନର ସବୁ ତଥ୍ୟ ମଣିଷ ଅନୁଭବ କରେ ହାଡ଼େ ହାଡ଼େ —ଆପଣାର ଜୀବନରେ—ଦୁନିଆ ସଙ୍ଗେ ଆପଣା ସମ୍ବନ୍ଧରେ—ନିଜ ମନ ଗହ୍ୱରରେ ।

ଅତଏବ ସବୁ ତରଙ୍ଗ —ତରଙ୍ଗ ହିଁ ସବୁ —

କିନ୍ତୁ ଯନ୍ତ୍ରଣାର ନାଦ ଗଁ ଗଁ ଠା ।?—

ତାର ଆବିଷ୍କାର ବୋଧହୁଏ ଭାବୀ ବିଜ୍ଞାନ—ନୋବେଲଲରିଏଟ୍ ଗ୍ରୁଡ଼ ପାଇଛନ୍ତି ଭାବୀ ସାହିତ୍ୟ—ନୋବେଲ-ଲରିଏଟ ପାଇଁ । ଠିକ୍ କଥା, ପିଲାଦିନେ ପଢ଼ିଥିଲି, ବିଜ୍ଞାନର ଶେଷ ଯେଉଁଠି ସେଇଠି ଆରମ୍ଭ କଳାର ।

ସିଗାରେଟ୍ ଧୂଆଁ ସଙ୍ଗେ ସଙ୍ଗେ ତରଙ୍ଗ ହୋଇ ଦୋହଲି ଲାଗିଛି ସବୁ ତା ଆଖି ଆଗରେ । ମନେ ମନେ ଗୁଣି ହେଉଛି ରମେଶ—ବିଜ୍ଞାନ ବୁଝେଇ ପାରି ନାହିଁ ସେଇ ତରଙ୍ଗ ସଙ୍ଗେ ଲାଗି ରହେ, ସ୍ମୃତିଗୁଣା ଗୋଟାଏ ଆର୍ତ୍ତନାଦର ଗଁ ଗଁ—ଏବେ ଆହୁରି ବାକି ଅଛି ବିଜ୍ଞାନ ଜାଣିବାକୁ ଆଉ ଗୋଟିଏ କଥା, ଯେ ତରଙ୍ଗ ହେଲା ପରେ ସେଇ ଶୂନ୍ୟ-ତରଙ୍ଗରୁ ଉତ୍ପତ୍ତି ହୋଇପାରେ ପୁଣି ଅବିକଳ ସେଇ ଜଡ଼ର, ଏଇ ଯେପରି ତାର ବି ହେଉଛି ।

"ମଶାୟ, ଆର୍ କିଛୁ ଲୁଇ ?"

"ଆଁ—ଆରେକ୍ କାପ୍ ଚା'—"

"ଏଇ ଭେଁଦଲ୍—", ଇଙ୍ଗିତ କଲେ ବିଜନ୍ ବାବୁ, ଟମ୍‌ଟମ୍‌ର ମାଲିକ, ଭେଁଦଲ୍—ଆଣି କପେ ଗରମ ଚା ଥୋଇ ଦେଇଗଲା ।

ଚନ୍ଦ୍ରାର ଶେଷ ପଦକ ଆଉଡ଼େଇ ଦେଇ ପାଖକୁ ଥୋଇ ଦେଉଥିଲ ରମେଶ—ନୋବେଲ ପୁରସ୍କାର ବ ମଣିଷ ପାଆନ୍ତି, ସେ ନିଜେ ଆରମ୍ଭ ବ କରିଥିଲା ଖୁବ୍ ଭଲ କରି, କିନ୍ତୁ –

ସେଥି କିନ୍ତୁ ପାଇଁ ଦାୟୀ ନୁହେଁ ଏକା ସେ, କିନ୍ତୁ ମାନେ ବାର ବର୍ଷର ଇତିହାସ, ଘଟନାଚକ୍ର, ଆଉ –

ଚନ୍ଦ୍ରାର ଶେଷ ପଦକ ମଝିରେ ବାଧା ଦେଲା ବେଗଂଦଲ୍ ଉପସ୍ଥିତ ।

ଏଇ ବେଗଂଦଲ୍—ବାର ବର୍ଷର ହୋଇଥିଲା ସେ ସେତେବେଳେ । ବୋଲ ମାନୁଥିଲ ଭଲ, ତାର ନରମ ହାତଗୁଡ଼ା ପିଠିରେ ଦେହେବ ବ ମନେପଡ଼େ । ଆଜ ସେ ଟିକିଏ ବଡ଼ ଦେଖାଇଛି । ସେମିତି ପଡିଲ ଫୁଲେ ଗାଲ, କିନ୍ତୁ ସେଥି ପୁରୁଣା ଦିନର ଔତ୍ସୁକ୍ୟ ଉଭେଇ ଯାଇ ମୁହଁରେ ଗୋଟାଏ ମାଡ଼ଲା, ଚାହାଣୀ ପଢ଼ୁଆଡ଼େ କଷ୍ଟପ୍ରଦ ସମସ୍ୟାର ପାଣିଦିଶି, ଗବ ଗବ ହୋଇ ପଡ଼ିଥିବ ।

ଘରର ଭିତରେ ଆଉକୁ ଚାହିଁଲେ ଯେଉଁ ଅନ୍ଧାର ଗମ୍ଭୀର ଦିଶୁଛି ତାର ବାଁ ପାଖକୁ କଷ୍ଟପ୍ରଦ ଥିବ ଗୋଟିଏ ବେଞ୍ଚ ବଖୁରା । ମନେପଡ଼େ ସେ ବ । ଘର ଭିତରର ସବୁ ଦୃଶ୍ୟ ଠିକ ଠିକ ହୋଇ ତାର ମନେ ଅଛି ।

ସବୁ ମନେ ଅଛି ।

ବଜନ ବାବୁ –ମୁଣ୍ଡ ମଝିରେ ସେମିତି ଚନ୍ଦା ଅଛିକ, ଟିକିଏ ବଢ଼ିଛି ବୋଧହୁଏ । ନୁଆଁ ନୁଆଁ ପ୍ରଜାପତି କଣ ଓଡ଼ିକି ପଡ଼ୁଛି ଟିକିଏ । ଆଖିରୁ ଜଲପାକେ ବ ଚାଳିଟା ସିଧା ତାର ପରିପୁଷ୍ଟି, ଏତିକି ତ, ଅଥଚ ଗୋଟାସୁଦ୍ଧା ସେଥି ଦଶ ବର୍ଷ ତଳର ବଜନ୍ ବାବୁ କଣ ଏମିତି ବେଶି ପରିବର୍ତ୍ତନ ? ଅଥଚ ଏହା

ମଝିରେ ଦେଶ ଜଗତରେ କେତେ ମନମଳ, ବିପ୍ଳବ, ଅତ୍ୟାଚାର, ଦୁର୍ଭିକ୍ଷ, ଦଣ୍ଡାଦେଶ. ପାକିସ୍ଥାନ୍, ସ୍ୱାଧୀନତା, କେତେ କଥା। ନ ହେଲେ ଜଣ ଏକା ଥିଏଟର ? ମଝିରେ ଖାଲି ହଠାତ୍ ଅଳୁଅ। ନିଭି ଯାଇଥିଲା ? ପୁଣି ଜଳି ଉଠିଛି ଷ୍ଟେଜ୍‌ରେ ଆଲୁଅ ? ଯେ ଭଡ଼ମୋଡ଼ ହେଉଥିଲା ସେ ଭଡ଼ମୋଡ଼ ହେଉଛି, ଯେ ସେତେବେଳେ ଖୁ ମାଛ ମୁହଁ ପାଖକୁ ନେଉଥିଲା, ସେ ଖୁ ପିଉଛି। ଜମ ରହିଛି ତ, ଛୁଡ଼ ନାହିଁ।

ମନୋଚିନ୍ତନ ସଚେତ ହୋଇ ରମେଶ ପୁଣି ସୁଷୁପ୍ତିଭେଦରେ ଦୃଷ୍ଟି ବୁଲେଇ ଆଣିଲା। ସେ ମୁଣ୍ଡରେ କଳରବ କରୁଛନ୍ତି ପାଞ୍ଚ ଜଣ ବନ୍ଧୁ। ନେପେ ନକୁ ମାଞ୍ଚ ଭାଗ କରି ପାଞ୍ଚଜଣ ବାଣ୍ଟି ନେଇ ଧୀରେ ଧୀରେ ଖାଉଛନ୍ତି, ଚିତ୍କାର କରୁଛନ୍ତି ରାଜନୀତିଚର୍ଚ୍ଚା—କଂଗ୍ରେସ୍ କଂଗ୍ରେସ୍ ବିରୋଧୀ ଜଣ, ଜଣେ ମୋଟା। ଚିତ୍କାରରେ ଆରମ୍ଭ ହେଲାଣି ଯୁକ୍ତିଯୁଦ୍ଧ. କଳହ. ମତର ଲଢ଼େଇ।

ସେମାନେ ଏଠି ମଜ୍ଜିଲେ।

ରମେଶ ଭାବୁଥାଏ—

ପଣ୍ଡିତମାନଙ୍କ ହୃଦୟରେ ଅଛି ହିଂସା, ମୋଟା ଲୋକଙ୍କ ହୃଦୟରେ ଅଛି ଲୋଭ। କାହିଁ ଏଠି ମହାତ୍ମାଙ୍କ ବଚନ—"ହିଂସାରୁ ହିଂସା ଜନ୍ମେ. ଜଣେ ଜଳୁ ଖାଏ ଆଉ ଜଣକୁ—?"

ତଳକୁ ଗଳି ପେଟରୁଛି ପୁଣି ପଛକୁ।

ସେ ହନନ୍ତ ରମେଶ।

ପାଣ୍ଡି କୋଉ ପିଲା ନ ଥିଲା, ସେ ହୋଇ ନ ଥିଲା ଖିତଂ ଆୟୁର୍ବେଦିକ୍ ଫାର୍ମାସିର ବୁଲା ଏଜେଣ୍ଟ—ତା ସହିତ ବି ଉତ୍କଳ ଇମ୍ପ୍ଲୁଭ ଟେନେମେଣ୍ଟସ୍‌ର ଭ୍ରାମ୍ୟମାଣ ପ୍ରତିନିଧି। ଆଜ ସେ ଲଜ୍ଜିତ। ତେଣୁ ହାତରେ ଦୁଇଟି ଚମଡ଼ା ମୁଣି।

ଶୋଇ ରହିଛନ୍ତି ଦୁଇ ମୂର୍ତ୍ତିରେ ଦୁଇ ବ୍ୟକ୍ତିତ୍ୱ ତାର, ପଦାକୁ ଗଲେ ଚେଇଁ ଉଠିବେ ।

ଚହଲି ଯାଉଛି ଚନ୍ଦ୍ରା । ଭାସିଯାଉଛି ଚେତନା । ତରଙ୍ଗ । ଖାଲି ତରଙ୍ଗ ଝିଁ ଏବଂ ଗଁ ଗଁ ।

ପୁଣି ଶୂନ୍ୟରୁ ସ୍ଥୂଳତାର ପ୍ରକାଶ ।

ଦଶ ବର୍ଷ ତଳେ । ଏଇ ଘରେ । ଏମିତି ସେ ନିତି ପିଇ ଆସୁଥିଲେ ବି । ଏକା ନୁହେଁ । ଥିଲେ ଆଉ ଜଣେ ।

ଓଃ, ଗଁ ଗଁ ବଢ଼ିଯାଉଛି । ମନର ସ୍ୱର ଓଦା ଜଖମ୍ । ଛଳଛଳେଇ ଉଠୁଛି ଲୁହର ବାମ୍ଫ । ଚେମ୍ପେଣ ଦାଗ ସନ୍ଧସନ୍ଧେଇ ରୁମାଲରେ ପୋଛୁଛି । ଏଇ ଟେବୁଲରେ କେତେ କେତେ ଲୋକ ଗଲେଣି— ଏକାଠି ହେଲେ ଗୋଟାଏ ଦୁନିଆଁ । ସାମ୍ନାରେ ମହାନଗରୀର ରାସ୍ତା ନଈରେ ଅନାବନା ସୁଅ । କିଏ କେତେବେଳେ ସୁଅରୁ କୂଳକୁ ଲାଗି ଆସେ, ପୁଣି ସୁଅରେ ଭାସିଯାଏ । ସେହି ସୁଅରେ ଭସେଇ ଦେଇ ପାରୁଛି ସେ ତାର କାଗଜର ଡଙ୍ଗା ଅଜାଣତ । ତାର ଜୀବନର କବିତା । ଆଜି ଆଜି !

ରେଲରୁ ଓହ୍ଲେଇ ଆସି ପହଞ୍ଚୁଛି କିଏ ଚିହ୍ନେ ତାକୁ ? ସେଁ ଦଳ ର ଚନ୍ଦ୍ରନାଥ ରାଜନ୍‌ଙ୍କୁ ଆଜି 'ଜଗତର ପଥରେ ପଥିକ' ସେ ଚନ୍ଦ୍ରନାଥ ନୁହନ୍ତି । ପାଣିଚିଆ 'ଦୃଷ୍ଟି' ଆଗରେ ଅଗଣିତ ମଣିଷ, ନାନା ଜାତି ପ୍ରକାର, ସେ ଏକା ।

ଧେତ୍, ଦୁନିଆଁ । ଦୁନିଆଁ ଖାଇଯାଏ, ଚୋବାଇଦିଏ, ଘାଉଡ଼ା କରେ, ଆଜି ସେ ଦିନର ତରୁଣ କବି ଗୋଟାଏ ଫମ୍ପା ମଣିଷ ।

"ହାୟ୍ ରେ ଦୁର୍ଭାଗା ଦେଶ—"

ଧୀରେ ଧୀରେ ବଙ୍ଗଳା ଭାଷାରେ ସେ ଭାବି ଲାଗିଲେଣି ମନେ ମନେ । ସ୍ୱାଭାବିକ । ସେତେବେଳେ ସେ ବଙ୍ଗଳା କହୁଥିଲେ ।

ଯାହା ପାଇଁ କହୁଥିଲ, କାହିଁ ସେ ?

ସୁନୀଆଡ଼କୁ ଚାହିଁ ଦୁଃଖ ତାର କୁହୁଳ କୁହୁଳ ହେଲା ଖାଲି, ଗାଲି ଦେଲା, ଖାଲି କାହା ଉପରେ ? ମାଣିରେ ବଧା । ତଥାପି ପାଣି, ଆହୁରି ପାଣି । ବୃଥା । ସେ ରମେଶ ନାହିଁ, ସେ ରମେଶ ମରିଛି, ହଜିଛି ତାର ପ୍ରେତାତ୍ମା ।

ହଠାତ୍, ଚମକି ପଡ଼ିଲା ସେ । ନିଶ୍ୱାସ ଶୋଷି ମନଭରି ଭାବ ଆଖିରେ ଜମା କରି ତୃଷାର୍ତ୍ତ ହୋଇ ଚାହିଁଲା । ହେଇ ତ ଦୂରରେ । ଅବିକଳ । ଦଶ ବର୍ଷର ବ୍ୟବଧାନ ମନେ ପଡ଼ୁନାହିଁ, ସ୍ଥାନ କାଳ ପାତ୍ର କିଛି ମନେ ନାହିଁ । ଖାଲି ଏ ପାଖରେ ସେ, ସେ ପାଖରେ—ସବିତା ।

ସବିତା ସୂର୍ଯ୍ୟ ନୁହେଁ, ସବିତା ନୁହେଁ ସବିତୃ ଶବ୍ଦର ସ୍ତ୍ରୀଲିଙ୍ଗ । ସବିତା ନାରୀ ।

ଗ୍ରେଟ ପ୍ଲାଷ୍ଟିକ୍‌ବ୍ୟାଗରୁ ପଇସା କାଢ଼ି ବନନବାବୁଙ୍କୁ ଦେଇ ସବିତା ଏଣୁ ଆଡ଼କୁ ଆସୁଛି ଦୁଆରମୁହଁ ଆଡ଼କୁ । ରମେଶ କଟମଟ କରି ଚାହିଁଛି । ଦୂରରୁ ଚାହିଁଛନ୍ତି ବନନବାବୁ । ସବିତା ସଙ୍ଗେ କ ଗୋଟାଏ ବିଭୂଜର ଦୁଇ ବାହୁର ଭେଟ ମୁନ ।

ଯେପରି କ ରମେଶର ପ୍ରବଳ ଇଚ୍ଛାଶକ୍ତିମିଶା ଦୃଷ୍ଟି ଆଘାତରେ ସବିତା ମୁହଁ ଟେକି ରମେଶକୁ ଚାହିଁଲା, ଥରିଉଠିଲା ରମେଶର ଦେହ, ଖାଲି ଚାହାଁଚାହିଁ । କିନ୍ତୁ କାହିଁ ସେଠି ସନ୍ଦେଶର ଗତାଗତ ? ଯେପରି କ ସୋଲେର ଚାହିଁଛି ସଲେଇକୁ ।

ରମେଶର ଦୃଷ୍ଟିରେ ପ୍ରେମ ଅଉ ପିପାସା,—କହିଲ, ଅଥବା ଆଶାବାଘ୍ର ।

. ବିଭୂଜର ଶୀର୍ଷ ବଦଳାଇ ବନନ୍‌ବାବୁ ତାକୁ ହିଁ ବାନ୍ଧିଲେ ଆଖି, କି ଦେଖାଉଛ ଏ ସୋଟା, ଜଣେ ଭଦ୍ରମହିଳାକୁ ଚାହିଁଛ ନଗର ?

'ମହାଶୟ, କ ଖୁଇ ଆପଣାର ଆର୍ ?"

"କ ଚାଇ ?" ଶୁଖିଲା ମୁହଁରେ ରମେଶ କହିଲା—ଆରେକ୍ କାପ୍ ଖ୍ |"

"ଙ୍ଗେଁ ଦଲ,—"

କନ୍ତୁ ରମେଶର ଦୃଷ୍ଟି ସେହି ସବଡା ଆଡ଼କୁ। ସବଡାର ମୁହଁ ରାଗରେ ଫୁଲଉଠୁଛି। ସିଧା ସେ ଦୁହାଁଙ୍କ ମୁହଁ ଆଡ଼କୁ ମୋହିଁଲ, ପିଠିର ଭଙ୍ଗୀରେ ଥଣ୍ଡା କାନ୍ଥ ଠଆ କରିବାର ମୁଦ୍ରା।

ରମେଶ୍ ଆଉ ସମ୍ଭାଳ ପାରିଲ ନାହିଁ। ଧଡ଼ପଡ଼ ହୋଇ ଉଠିପଡ଼ି କହିଲ,

"ସବଡା !—"

"କେ ଆପଣ ?"

"ତୁମି ଚନ୍ତେ ପାରୁନା ?"

"ଆମି ତୋ ଆପନାକେ ଚନ ନା ' ସବଡା ବୁଲପଡ଼ି ଗମ୍ଭୀର ହୋଇ ଛ୍ହିଁଛି। ଡେଇଲା ପୂର୍ବରୁ ନିଜକୁ ସମ୍ଭାଳିଲା ଭଳି ଚାର ଭଙ୍ଗୀ। ମହାନଗରୀର ଝିଅ ସେ, ବହୁତ ଦେଖିଛୁ ଏମାନଙ୍କ ଢଙ୍ଗ। ପାର୍କରେ ବସିଥିଲେ ଧାଖକୁ ଆସି ଉପରେ ପଡ଼ି କହିବେ "ଆଇ ଥିଙ୍କ୍ ଭଇ ହ୍ୟାଭ୍ ମେଟ୍ ବଫୋ"—। ବଜନ୍‌ବାବୁଙ୍କ ମସ୍ତିଷ୍କର ଶିସିଭର ସେଟ୍‌ରେ ସତେ କ ଏହି ମନକଥା ବାଜି ଉଠିଲା ସବଡାର। ଭିତରର ଚୁମ୍ବା ମରଦ୍ ତାଙ୍କର ଈର୍ଷାରେ ଗୋଟାଏ ଗମ୍ଭୀର ଗର୍ଜନ ଛାଡ଼ିଲେ—ଧୀରେ ଉଠି ଆସି ରମେଶର କାନ୍ଧ ଉପରେ ହାତ ଲଦି କହିଲେ

"କ୍ୟା କୋ ମଶାୟ ମଙ୍ଗୁ ମି—"

"ବୋଁଡ଼ାନ୍ ଅନ୍ନ—" କାନ୍ଧ ଝାଡ଼ି ଦେଇ ରମେଶ ଟାଣ କରି କହିଲା—

"ସବିତା, ଆମି ରମେଶ୍—"

"ଆମି ଆପ୍ନାକେ ଚନି ନା,—" ଫଟ୍ କରି କହିଦେଇ ସବିତା ଖସ୍ତା ଆଡ଼କୁ ବୁଲିପଡ଼ିଲା । ପଛରୁ ରମେଶ୍ ଚିତ୍କାର କଲା "ସବିତା"

"ଓଃ, ମଶାଇ, ବଡ଼ ବାଡ଼ାବାଡ଼ି—" ହରିଜନ୍‌ବାବୁ କହିଲେ । ପୁଣି ସବିତା ବୁଲି ପଡ଼ିଛି । ଅଥଚ କି ଆଶ୍ଚର୍ଯ୍ୟ, ଭୁଲିଯାଇଛି ସେ ଏକଦମ୍ । ଚିହ୍ନେ ନାହିଁ ।

"ଆପଣ ବି ଭୁଲିଗଲେ ଯେ ହରିଜନ୍ ଦା—ମୁଁ ମିଷ୍ଟର ପାଣିଗ୍ରାହୀ । ଦଶ ବର୍ଷ ତଳେ ଦୁଇ ବର୍ଷ କାଳ ଆପଣଙ୍କର ଏଠି—"

"ଓ ହରି ! ଗୁଡ୍ ଗଡ୍ ! ଗ୍ରେଟ୍ ଷ୍ଟେଟ୍ ! ଓ ଭେଁ ଦଲ୍—"

"ମୁଁ ଆଜି ସବିତା ଦୁହେଁ ଆସିଥିଲୁ ଏଠିକି ଚା ଖାଇ, ଆଜି,—"

"ରମେଶ୍ ଦା ! ନଇଁପଡ଼ିଲା ସବିତା ତା'ର ପାଦ ପାଖେ: ରମେଶର ଗୁଡ଼ିଏ ଭିତର ରକ୍ତ ଆନନ୍ଦରେ କୁଦା ମାରୁ ମାରୁ ସବିତା ଉଠି ପଡ଼ି ମ୍ଲାନ ହସ ହସି କହିଲା,—

"କାନ୍ଦଥାନ୍ତି, କିନ୍ତୁ ମୁଁ ମହିଳା ପୋଲିସ୍ । ତା ଛଡ଼ା ଏ ଦଶ ବର୍ଷରେ ମୋର ଲୁହ ସରିଯାଇଛି । ଦୁନିଆଁକୁ ତ ଦେଖୁଛନ୍ତି ! ଛି, କି ଲଜ୍ଜାର କଥା ! ଆପଣଙ୍କର ବି ଏ କି ପରିବର୍ତ୍ତନ ! ଟ୍ୟୁଣ୍-କୋଟ୍-ଟାଇ —"

"ଦେଶ ସ୍ୱାଧୀନ ହେବା ପରେ,—"

ରମେଶର ଦର୍ଶନଶାସ୍ତ୍ରର ବ୍ୟାଖ୍ୟାକୁ ବାଧା ଦେଇ ସବିତା କହିଲା—" ଆପଣଙ୍କର ଚେହେରା ଶୁଖିଯାଇଛି ଏକଦମ୍; ଅଥଚ କି ସୁନ୍ଦର ଝଲପି ବାଳ ଥିଲା ସେତେବେଳେ, ଉଦୟଶଙ୍କର୍ ଷ୍ଟାଇଲ୍—"

ହଠାତ୍ ଗୋଟାଏ ଟ୍ୟାକ୍ସି ଅଟକିଲା, କବାଟ ଖୋଲିଗଲା । ଭିତରୁ ଜଣେ ଭଦ୍ରଲୋକ ଧୋଗଡ଼ା ପାଟିରେ ଡାକିଲେ—'ଏଇ ଯେ,—" ! ସବିତା ପ୍ରାୟ ଧାଇଁଗଲା, କହି ଦେଇଗଲା—

"ଆସି ଗଲେଣି ରମେଶ୍ ଦା, ନମସ୍କାର"—ଟ୍ୟାକ୍ସିରେ ବସି ସବିତା ମୃଦୁ ଭଙ୍ଗୀରେ କେଉଁ କଣରେ ବୁଡ଼ିଗଲା ।

ସ୍ୱଜନବାବୁ କହିଲେ,—"ତାର ପରେ ? କ୍ୟାମନ୍ ଆଛେନ୍ ?"

"ଭାଲୋ, ଭାଲୋ,—" ରମେଶ୍ ଚଞ୍ଚଳ ଚଞ୍ଚଳ ଗ୍ଲ'ର ଦାମ୍ ଦେଇ ବାହାରି ଚାଲିଗଲା ।

ପୂର୍ଣ୍ଣ ଜନସମୁଦ୍ର ।

ଗ୍ଲାସ ଭିତରେ ତଥାପି ଧକ୍ ଧକ୍ କରେ, ସବିତା, ସବିତା ।

ସବିତାକୁ ପାଇଥିଲା ସେ ।

ସମସ୍ତ ଥିଲା, ଯେତେବେଳେ ସବିତାର ସବୁ ହୋଇଥିଲା ସେ, ଆଉ ସବିତା ହିଁ ହୋଇଥିଲା ତାର ଦୁନିଆଁ ।

ତା ପରେ ଲେଉଟି ଯିବାକୁ ପଡ଼ିଲା, ତଥାପି ମନଅନ୍ତରରେ ବନ୍ଧନ— ।

ତା ପରେ ଚାଡ଼ା ଚାଡ଼ା ଛାଡ଼ି, ସବିତା ହେଲା ତାର କବିତା ।

ତା ପରେ ଘରେ ଜଟିଳତା, ସବିତା ହେଲା ତାର ସମସ୍ୟା ।

ଆପଣା ସମାଜ ପାଖେ ହାରିବାକୁ ପଡ଼ିଲା, ସବିତା ଯୋଗୁଁ ତାର ବାଳଉପୂଡ଼ା, ଦେହ ଶୁଖା, ଉଦାସୀନତା, ଜୀବନବିମୁଖତା । କ୍ରମେ ସେହି ବିକାରର ହିଁ ରୂପପରିଣତି—ଏ ବାଉଳା ଜୀବନ, ଏ ଅବସ୍ଥା ।

ଆଉ ଆଜି ?

ଟବରା ବ ଓର୍ମ ସମସ୍ତ-ତରଙ୍ଗରେ ପାଲଟିଛି ରୂପାନ୍ତର ତରଙ୍ଗ ।

ଆଜି ଗାଁ ଗାଁ ଦୁଃଖର ଶବ୍ଦ ? ଭୁଲି ହେଇ ନାହିଁ ।

ନିଜ ଅଜାଣତରେ ସେ ଠିଆ ହୋଇ ଚାହିଁରହିଛି ଗୋଟିଏ ଦୋକାନକୁ, ଯେଉଁଠି ବ୍ୟାୟାମ କରିବାର ଉପକରଣ ବିକି ହୁଏ । ଚାହିଁରହିଛି ଝୁଲିଥିବା କେତେଗୁଡ଼ିଏ ତାର ସ୍ପ୍ରିଂର ଚେଷ୍ଟ-ଏକ୍ସପ୍ୟାଣ୍ଡର୍‌କୁ, ସଜା ହୋଇଥିବା ଡମ୍ବେଲ୍‌କୁ ।

ମନ ଗହ୍ୱରର ଇଚ୍ଛା ଧରିଛି ରୂପାନ୍ତରିତ ଭାବ । ଡମ୍ବେଲ୍— ହାତରେ ମୁଠେଇ ଚିପି ଦେବାକୁ ହୁଏ । ଚେଷ୍ଟ ଏକ୍ସପ୍ୟାଣ୍ଡର୍, ଦୁଇ ମୁଠାରେ ଧରି ଓଟାରିବାକୁ ହୁଏ, ଓଟାରିବାକୁ ହୁଏ, କେତେ ଦୂର ଲମ୍ବିଯିବ ଓଟାରିଲେ ?

ହଠାତ୍ ଜଣେ ବାଟୋଇର ଧକ୍କାରେ ଓଟାରି ହୋଇଗଲା ସେ, ଝୁଲିଗଲା ଗୋଟାଏ ତ୍ରକ୍ ।

“ଆର୍ ଏକ୍ଟୁ ହୋଲେ ଗେଛ୍ଲେନ୍ ବାଇକ ଆପ୍ନି,” ଭଦ୍ରଲୋକ କହିଲେ ।

“ତାଇ ତୋ !”

“କଣ ଏତେ ଭାବୁଥିଲେ ଆପଣ ?”

“ଭାବୁଥିଲି, ଲଭ୍ର ଜଓର୍ ହୁଏ କୋଉଥିରେ ।”

“ଏଇ ଯେ—ଯାହା ଦେଖୁଛନ୍ତି ସେଇଥିରେ ହୁଏ ।” ରମେଶ ଦେଖିଲା, ଗୋଟମ୍ ଗାଟମ୍ ମୋଟାସୋଟା ଲୋକଟିଏ, ବାଳ ଗ୍ରେଟ ଗ୍ରେଟ କଦମଫୁଲିଆ, ଥୋଡ଼ରେ ଦାଢ଼ି ଫୁଲିଏ, କଳା ଫତୁଆ, ସିଲ୍କ ଲୁଙ୍ଗୀ । ଭଦ୍ରଲୋକ ଚାଲିଗଲେ ।

ମନେପଡ଼ିଲା ହଠାତ୍, ଏଇ କଥା ତ ତାର ବ୍ୟାୟାମ ଗୁରୁ ଉତ୍କଳଧାମ ପଦ୍ମଚରଣ ବି କହୁଥିଲେ ଦିନେ,—“ଭଲ ଲଭ୍ ଲଭ

ବାପା, ଠେଙ୍ଗା ଧଇଲେ ଲଭ୍ ଫଭ୍ ଗୁଡ଼ି ପଳେଇବ । ଡମ୍ବେଲ୍ କର, ଚେଷ୍ଟ୍ ଏକ୍ସ୍‌ପ୍ୟାଣ୍ଡର୍ କର, ବାଡ଼ ଠେଲ କର, ଦଣ୍ଡ ବୈଠକ କର, ଯେଡ଼େ ବଡ଼ ଲଭ୍ ରୋଗ ଥାଉ, ଉଡ଼ିଯିବ ଛୁଅଭେ ।"

ସବୁଟା, ସେ ଜାଣ୍ଟି । ସବୁଟା ବୁଡ଼ିଯାଇଛି ।

ମନର ଗିଁ ଗିଁ ମର ମର ଆସୁଛି, ଚାଲିଛି ରମେଶ୍ ।

ଏଥର ସ୍ଥୂଳ ଖାଲି ତରଙ୍ଗ ହିଁ, ଅଶବ୍ଦମ୍, ଅସ୍ପର୍ଶମ୍, ଅବ୍ୟୟମ୍, ଅରୂପମ୍ । ନୂଆ ବୈଜ୍ଞାନିକ ତଥ୍ୟର ସତ୍ୟ ପ୍ରମାଣ କରିଛି ସମସ୍ତ, 'ଶୂନ୍ୟକୁ କରିଛି ମହାକାଳ ।'

ରମେଶ ଦଶ ବର୍ଷର ମୁହୂର୍ତ୍ତରେ ସ୍ଲାକ୍ ଗଡ଼ିସାରି ଛୁଟି ଚାଲିଛି ଟାଞ୍ଜେଣ୍ଟରେ, ଏଥର ସେ ପ୍ରକୃତରେ ଏଜେଣ୍ଟ୍, ବଞ୍ଚିବା ପାଇଁ ବଟେ ।

———

# ଗୁପ୍ତ ଗଙ୍ଗା

ସେଇ ପୁରୁଣା କାହାଣୀ—ସ୍ୱାମୀ ଅନ୍ୟ ଗୋଟିଏ ସ୍ତ୍ରୀ ଲୋକକୁ ଘରକୁ ଆଣିଛି, ତାକୁ ଆଉ ପଚାରୁ ନାହିଁ । ସେ ମୂଳ ଲଗି ଟେଣ୍ଟ ପ୍ରୋଟେଷ୍ଟ, ବାପଘରେ ରହେ, ବଡ଼ପୁଅକୁ ଛ' ବର୍ଷ, ତା ତଳେ ଝିଅ, ତିନ ବର୍ଷ । ସେ ଆଜି ହୃଦୟ ପାଇଁ ଖାଦ୍ୟ ଖୋଜେ ନାହିଁ, ମାତ୍ର ଗାଳି ହତାଦର ଶେଷରେ ତେଜ୍ୟା, ସବୁ ସହିଛି । ତା'ର, ଆଜି ଏ ଦୁ' ଛୁଆଙ୍କ ପାଇଁ ପେଟକୁ ଖୋରାକ ଦରକାର । ମାସକୁ ଅନ୍ତତଃ ପଚିଶ ଟଙ୍କା, ତା ବି ଦେବାକୁ ତା'ର କ୍ଷମତା ଅଛି, ସେତିକି ହୁକୁମ୍ ହେଉ ।

ଏଇ କଥା ସେ କାଗଜରେ ଲେଖାଅଛି । କିନ୍ତୁ ଭଲେ ଭାଷାରେ, ଭଲେ ବାଗରେ, ଯେପରି ଆଇନରେ ଖାପିବ । ମଣିଷ ଜୀବନର କରୁଣ କାହାଣୀ ଆସି ହେଲାଣି—ଗୋଟିଏ ନମ୍ବର ମକଦ୍ଦମା, ୪୮୮ ଦଫାରେ କାର୍ଯ୍ୟାନୁଷ୍ଠାନ ।

ତାକୁ କହିବାକୁ ପଡ଼େ ନୁହେଁ, ହେଇ ଯେ ସେ କଣରେ ସଂକୁଚିତ ହୋଇ ତଳକୁ ମୁହଁ ଠିଆ ହୋଇଛି, ଅଣଓସାର ନାଲି ଧଡ଼ିଆ ଶସ୍ତା ଧଳା ଶାଢ଼ୀ ଖଣ୍ଡେ ପିନ୍ଧିଛି । ତା'ଠି ଝାଉଁଳି ପଡ଼ିଥିବା ସେଇ ପରିପୂର୍ଣ୍ଣ ସୌନ୍ଦର୍ଯ୍ୟ, ଯାହା କେବଳ ଦେଖାଯାଏ

ସେହି ସ୍ତ୍ରୀମାନଙ୍କଠେଁ, ଯେଉଁମାନଙ୍କୁ ଏହିପରି ହତାଦର ସହିବାକୁ ହୁଏ । ନାକରେ କାନରେ ନମ୍ବକାଠି । ହାତରେ ଦେଶୀ କାଚ-ଶଙ୍ଖା । ମୁଣ୍ଡରେ ଆଠଣି ଆକାରରେ ସିନ୍ଦୂର ଥୋପାଏ ।

ତାର ବକ୍ତବ୍ୟ ଏ । କହିବାକୁ ଠିଆ ହୋଇଛନ୍ତି ଯେ, ସେ କଳା କୋଟ ପିନ୍ଧିଛନ୍ତି ।

ଆଉ ପକ୍ଷର କାହାଣୀ ବି ଚହ୍ଲା ଚଢ଼ା ଲଗୁଛି—ସେ ବେହୃ ହୋଇ ଆସିଥିଲା ସିନା ! କାହାରିକୁ ଜମା ମାନେ ନାହିଁ । ସ୍ୱାମୀ ଶ୍ୱଶୁର ଶାଶୂ ସମସ୍ତଙ୍କି ମୁହେଁ ମୁହେଁ ଅପମାନ ଦେଲା । ଘରକୁ କୁଣିଆ-ମଇତ୍ର ଆସିଲେ ବି ତାଙ୍କୁ ଶୁଣେଇ ଶୁଣେଇ ନାନା ଅପମାନ କଥା କହିଲା, ବାପଘରକୁ ସବୁବେଳେ ପଳାଇ ପଳାଇ ଚାଲିଲା । ଶେଷରେ ଚରିତ୍ର ବି ନଷ୍ଟ କଲା । ଏଇ ଝିଅଟା ମୋର ନୁହେଁ ହଜୁର ! ସେଠି ପର ଲୋକ ସଙ୍ଗରେ ତା'ର ଅସତ୍ ସମ୍ବନ୍ଧ । ତଥାପି ମୁଁ ତାକୁ ବାରମ୍ବାର ଡାକିଲି ଘରକୁ ଆ, ଘରକୁ ଆ । ଏବେ ବି ଡାକି ଲଗୁଛି । ସେ କାହିଁକି ଶୁଣିବ ! ସେ ତ ଧରିଛି ଭଲ ପର୍ଟି, ସେ ମଜଜ ମାରୁଥିବ, ପୁଣି ସେଥିପାଇଁ ପଇସା ଦେଉଥିବ ମୁଁ । ପଇସା, ପଇସା ଦେବା ବଳ ବି ମୋର ନାହିଁ । ଜମି ଯାହା ଅଛି, ସବୁ ଭାଗଚାଷୀ ମାଡ଼ି ବସିଛନ୍ତି । ମକଦ୍ଦମା କିଏ ତାଙ୍କ ସାଙ୍ଗରେ କରିବ, ନା ଜମି ଛଡ଼େଇବ । ଖାଇବାକୁ ବି ମିଳୁ ନାହିଁ ।

ସେ ହେଲା ସେହି ସବୁଆ ତେଙ୍ଗା ଯୁବକଟିର କୈଫିୟତ୍ । ତାକୁ ବି କହିବାକୁ ଯେ ଠିଆ ହୋଇଛନ୍ତି, ସେ କଳା କୋଟ ପିନ୍ଧିଛନ୍ତି । ସବୁଆ ତେଙ୍ଗା ଲୋକଟି ବି କମ୍ ସହାନୁଭୂତି ଉପୁଜାଉ ନାହିଁ ! କୁଞ୍ଚକୁଞ୍ଚିଆ ବାଳ, ମଝିରେ ଭାଙ୍ଗି ଫିରେଇ କାଟିଛି ।

ଫେସ ର ଆଖି ଦୋଟି, ମୋଟା ଚଷମା ବାଟେ ସଦାଂକୁ ଆନ୍ତର ଭାବପ୍ରବଣ ଦିଶୁଛି । ଅସ୍ଥିର ପାତଳ ଓଠ ଦି'ଫାଳ । ଚିବୁକଟି ଗୋଲ, ନାକଟି ବେଶୀ ଉଞ୍ଚ ନୁହେଁ, ବେଶି ଖୋଳା ନୁହେଁ । କପାଳଟି ପଛ ଆଡ଼କୁ ଢଳିଛି ।

ନା, ସେ ନିଷ୍ଠୁର ବୋଲି ଜଣାପଡ଼ୁ ନାହିଁ । ଦୁର୍ବଳ ?— ହଁ, ହୋଇପାରେ ତା । ତା'ର ଓସାର ଲୁଗା, ଫୁଲୁକା ଢିଲା ଧୋବ ପଞ୍ଜାବୀ, ଗୋଟିଏ ଗୋଡ଼ ରଖି ରଖିକା ଝୁରୁଛି ; ପେପର କ ସେଇ ଗୋଦର ପାଦରେ ସେ ଉହା ଉପରେ ବୁଦୁଛି । ଦେଖିଲେ ଲାଗୁଛି । ମର୍ଲି ଫୁଲ ଅତର ଭଲ ପାଉଥିବ, ସେମିତି କିଛି ଶସ୍ତା ବାସ୍ନା । କ୍ୟାଲେଣ୍ଡରର ଛବି କାନ୍ଥରେ ଝୁଲୁଥିବ, ସେଇପରି ଛବି ଯେପରି କି ଜଣେ ବସିଥିବ, ଆଉ ଜଣେ ତା କାନ୍ଧ ଉପରେ ଢଳି ପଡ଼ି ତା ଆଖି ବନ୍ଦ କରି ଦେଇଥିବ, ନ ହେଲେ ଗୋଟିକିଆ ଜଣେ ନେଇ ସ୍ତ୍ରୀ ଲୋକ ଯେ ଏକ ଛାପାଖାନାର ବିଜ୍ଞାପନ ପ୍ରଚାର କରିବାକୁ ଯାଇ ପ୍ରକୃତରେ କାହାର ଏକ୍‌ସଟ୍ରାକ୍‌ଟର ବିଜ୍ଞାପନ ପ୍ରଚାର କଲା ଅବସ୍ଥାରେ ଥିବ । ସଙ୍ଗୀତରେ ସେ ପସନ୍ଦ କରୁଥିବ, ନାକ ସାହାଯ୍ୟରେ ଶିଁ ଶିଁ କରି ଗାଇ ହେଲା ଭଳି ସନ୍ତସନ୍ତିଆ ଗୀତ, ଯାହାର କିଛି ବିଶିଷ୍ଟ ଗତି ନ ଥିବାରୁ ତାକୁ ଅଧୁନିକ ବୋଲି କୁହାଯାଏ, ଆଉ ଯାହାର ଭାବ ହେଉଛି କେବଳ କୌଣସି ସ୍ତ୍ରୀ ଲୋକ ପାଇଁ ଦୀର୍ଘଶ୍ୱାସ ପକାଇ ଲୁହ ଢାଳି ଢାଳି ଗୁଣି ହେବା ।

ସେ ହଣୁ ନାହିଁ ସେଇ ଆରକ ପରି, ଠିକ୍ ଏଇ ବୟସରେ ପ୍ରାୟ ଏହିପରି ଦେଖେଇବ । କିନ୍ତୁ ମୁହଁର ଠାଣି ଭଳେ – ଯେ ତାହାର ସ୍ତ୍ରୀର ହାତ ଗୋଡ଼ ଏକାଠି ଗଣ୍ଠି ପକାଇ ତାକୁ ମଶାରି ବାଡ଼ାରୁ ଓହଳେଇ ଦେଇ ତା'ର ପଛଆଡ଼ ବେତରେ ପିଟି ପିଟି ନୋଳା

ଫଟାଉଥିଲା । ଯାହାର ସ୍ତ୍ରୀ କଚେରୀଘରେ ଲୁଗା ଖୋଲିଦେଇ ଦେଖାଇଥିଲା କିପରି ତା'ର ଶରୀର ସାକ ଖାଲି ଚମଡ଼ା ଦାଗ, ତା'ର ସ୍ୱାମୀ ଦେଇଥିବା ମୁଦ ଚିହ୍ନ ।

ତଥାପି ସେଥିପାଇଁ ସେ ହୋଇ କହିବାକୁ ହେବ । ସେହି ଭଦ୍ରଲୋକ, ଯେ ହାତରେ ମାରୁ ନ ମାରୁ, ନିର୍ବୋଧ ହୋଇ ପ୍ରକାଶ୍ୟ କଚେରୀରେ ଆପଣା ବିବାହିତ ସ୍ତ୍ରୀକୁ କୁଳଟା ହୋଇ ଘୋଷଣା କରିପାରନ୍ତି, ଆପଣା ସନ୍ତାନକୁ ଜାରଜ ବୋଲି କହନ୍ତି ।

ବନ୍ଧୁବର୍ଗଙ୍କ ଏ ପାଖରୁ ସେ ପାଖ—ଏ ମୁହଁରୁ ସେ ମୁହଁ ଅନେଇ ଆସିଲେ । ଉଭୟ ପକ୍ଷ ଆସିଛନ୍ତି ଦୁଃଖ ଗୁହାରିବାକୁ । ଏକ ସାଧାରଣ ମକଦ୍ଦମା । ଦିନଟା ଭିତରେ ସବୁ ସରିଯିବ ।

ତା ପରେ ?

ଖିଆଲ ହେଲା ଏଠି ଆଇନ୍ । କାଗଜରେ ଲେଖା ହୋଇଥିବା ସାକ୍ଷୀ ଇଜାହାର, ତହିଁର ଅଧିକ ଏଠି କିଛି ଭିତରକୁ ଆସେ ନାହିଁ । କିନ୍ତୁ ଭୁଲି ହେଲନାହିଁ —ସାମ୍ନାରେ ମଣିଷ ଜୀବନର ଏକ ଚମତ୍କାର ନାଟକ କି ଅଭିନୀତ ହେଉଛି, ଅଇନ୍ ତାକୁ ଅନ୍ଧ କି ନ ଅନ୍ଧ । କଳ୍ପନାରେ ଅତୀତ ଦିଶିଗଲା । ବିବାହବେଦୀ ପାଖେ ଏଇ ଦୁହେଁ । ସେମାନେ ମୁକୁଟ ପିନ୍ଧିଥିଲେ, ଅଳତା ନାଇଥିଲେ । କେତେ ଲୋକ କୁତୂହଳରେ ଅନାଇଁ ରହିଥିଲେ ସେମାନଙ୍କୁ । ନୂଆ ଘରକରଣା, ଲକ୍ଷ୍ମୀ ନୂଆ ବୋହୂଟି । ସେତେବେଳେ କେତେ ସ୍ନେହ ଆଦର, କେତେ ଆଶା, କେତେ ସ୍ୱପ୍ନ । ସେହି ମୋଟେ ଆଠ ଦଶ ବର୍ଷ ତଳେ । ସେ ଆପଣା ହାତରେ ତା ମୁହଁରେ ମୁଣ୍ଡରେ ମଲ୍ଲୀଫୁଲିଆ ଅତର ବୋଳି ଦେଇଥିବ ।

କେତେଥର ଅନ୍ଧାର ଘରେ ବସି ଝର୍କାବାଟେ ଜହ୍ନ ଆଡ଼କୁ ଚାହିଁ ରହୁଥିବେ ସର୍ବେ । କଣେଇ କଣେଇ ସେ ତା'ର ସୁନ୍ଦର ମୁହଁକୁ ଅନାଇଁ ଦେଖିଥିବ, ଆଜି ସବୁ ପୁରୁଷଙ୍କ ପରି ସେ ବି ଭାବୁଥିବ, ବାଃ ! କେଡ଼େ ସୁନ୍ଦର ତା'ର ସ୍ତ୍ରୀ । ତା'ର ଏଇ ରକ୍ତ-ମାଂସର ଜଞ୍ଜା ମଣିଷ ଦେହକୁ କେତେଥର ସେ ଭାବୁଥିବ ଏକ କବିତା ବୋଲି, ଏକ ସୁନ୍ଦର ସ୍ଥାପତ୍ୟ ବୋଲି, ଏକ ଉଚ୍ଛ୍ୱାସ ବୋଲି । ଭାବୁଥିବ—ସେ ଏକ ବାସ୍ନାଫୁଲର ମାଳା, କେତେ-ବେଳେ ଭାବୁଥିବ କେବଳ ଅତି ରୁଚିକର ଖାଦ୍ୟ ବୋଲି ।

ପ୍ରୌଢ଼ ବର୍ତ୍ତରପତି ମୁହଁ ଟେକି ଦୁଇ ମୁହଁର ମଝିରେ ସିଧା ଦୂରକୁ ଅନାଇ ରହିଥିଲେ, ବାଁକୁ ନୁହେଁ, କି ଡାହାଣକୁ ନୁହେଁ । ମୁହଁ ପଛେ ଦୂରରେ ଦିଶୁଛି ପୁରୁଣା ଖପର୍ଲ ଘର ଧାଡ଼ିଏ, ସହରର ଏକ ପଲ୍ଲୀ, ସେ'ଠା ପୁରୁଣା ଡେଙ୍ଗା ନିମ୍ବଗଛ । ଠିକଏ କରକୁ କନା ହାଇସ୍କୁଲ ପଡ଼ିଆର ଗୋଲପୋଷ୍ଟ । ଓସାର ପଡ଼ିଆଟା ଦିଶୁଛି । ଏତେ ଝଡ଼ରେ ମରି ମରି ତଥାପି ସେଠି ଘାସ ରହିଛି ।

ଛନୋଟି ଗୋରୁ ଘାସ ଚୋବାଉଛନ୍ତି । ପଡ଼ିଆ ଏ କଣରୁ ସେ କଣକୁ ପାଦଗଲା ବାଟ ପଡ଼ିଛି । ଲୋକେ ଚାଲୁଛନ୍ତି । ଖରା ଦା'ଉ ଦାଉ ଦୁଲୁକୁଛି ।

ଯୁଆଡ଼େ ନାଁ ଜୀବନ, ସବୁ ପରିଷ୍କାର, ସବୁ ଠିକ୍ଠାକ୍ । ଏହାରି ଭିତରେ ହଠାତ୍ କେତେବେଳେ ଛୁଇଁ ଦୌଡ଼ିଯାଏ, ତୋଫାନ ଆସେ, ଜହ୍ନ ଉଠେ, କେତେବେଳେ ସବୁ ଅଜାଡ଼ି ହୋଇଯାଏ ଆନନ୍ଦ ଓ ଆଲୋକର ଧାର । ଆଉ କେତେବେଳେ ସବୁ ଦୂଷିତ ବିଷ ପାଲଟିଯାଏ, ନିଆଁ ଜଳିଉଠେ ।

ସଂସାର ହୁଏ ବିଷମ, ବିକ୍ଷୁବ୍ଧ । ବିଶ୍ୱରପତି ଦାର୍ଶନିକ ଚିନ୍ତାରେ ସକଳ ଘଟଣାର ଅର୍ଥ ଖୋଜିଥିଲେ । ଅଜାଣତରେ ବିଷୟ ଉପରେ ଆପଣା ଅଶାନ୍ତ ଜୀବନ, ରଙ୍ଗ ଢାଳିଥିଲା । ଆଜି ସେ ଦୁହିଁଙ୍କର ବିଚ୍ଛେଦ ହୋଇ ନାହିଁ, କିନ୍ତୁ କାହିଁ ସେ ଆଗର ସମ୍ବନ୍ଧ ? କାହାରିକି ତ୍ରୁଟି ନାହିଁ । ସେ ଆପଣା କର୍ତ୍ତବ୍ୟ କରିଛନ୍ତି — ପରିବାର ଗଢ଼ିବା, ପରିବାର ପୋଷିବା, ଯାହା ଆବଶ୍ୟକ ପଡ଼ୁଛି, ତାକୁ ଯଥାସାଧ୍ୟ କିଣିବା, ପିଲାଙ୍କ ପାଇଁ ମାଷ୍ଟର ଖୋଜିବା, ଘରକରଣା ପାଇଁ ଚାକର ପୂଜାରୀ ଖୋଜିବା, କେହି ରୋଗରେ ପଡ଼ିଲେ ଡାକ୍ତର ଡାକିବା ଔଷଧ କିଣିବା । ଏ ସବୁ କର୍ତ୍ତବ୍ୟ ସେ ଅକାତରେ କରିଛନ୍ତି । ଆର ପକ୍ଷରେ ତାଙ୍କ ସ୍ତ୍ରୀ ବି ଅକାତରେ ଆପଣା କର୍ତ୍ତବ୍ୟ କରିଛନ୍ତି । ପିଲାଙ୍କ ପାଇଁ ରାତି ରାତି ଉଜାଗର, ଘର କାମପାଇଁ ଝନପାକ ପଥର ଚକି ପରି । ଘର ଚଳେଇବାର ଗୁରୁଭାର ସେ ଗ୍ରହଣ କରିଛନ୍ତି । କାମ କରି କରି ଆପଣା ସୁଖ-ସ୍ୱାଚ୍ଛନ୍ଦ୍ୟକୁ କେଉଁକାଳୁ ଜଳାଞ୍ଜଳି ଦେଇ ସାରିଛନ୍ତି । ଠିକ୍ କଥା, କର୍ତ୍ତବ୍ୟ ତ ଉଭୟେ କରିଛନ୍ତି । କିନ୍ତୁ ବୋଧହୁଏ ଦାନ୍ତ ଚିପି ମାଡ଼ ମକଚି କର୍ତ୍ତବ୍ୟ କରିବାଟା ହିଁ ଭୁଲ୍ ହୋଇଛି । କାରଣ ଉଭୟେ ପରସ୍ପର ବିରୁଦ୍ଧରେ କର୍ତ୍ତବ୍ୟର ସେହି ତାଲିକାଟାକୁ ହିଁ ଉହ୍ମୁଁକେଇ ଚାଲିଛନ୍ତି ସବୁବେଳେ । ଆଜି ପ୍ରତ୍ୟେକେ ଭାବୁଛନ୍ତି ତାଙ୍କର ଉପରେ ହିଁ ଅପର ପକ୍ଷର ବେଶି ଉତ୍ପୀଡ଼ନ ।

ଆଜି ବୟସ ପଇଁତାଳିଶ, ଦେହ ଗରୁ ହୋଇଛି, ଦୁବ ଦାରୁ ହୋଇଛି । ମୁହଁ ହେଲାଣି ଚଟା ଚେକା । ମୁଣ୍ଡ ଚନ୍ଦା ହେଲାଣି । ଦେହର ଗୋରବର୍ଣ୍ଣଟା ଆହୁରି ତେଜ ଦିଶୁଛି । ସେହି ମୁହଁରେ ମୋଟା କଳା ଫ୍ରେମର ଚଉଆଁଶିଆ ନେଳି କାଚର ଚଷମା ନାଇ

ଉଚ୍ଚ ଆସନ ଉପରେ ବସି ତଳକୁ ଅନାଇଲେ, ବସ୍ତୁରକର ମୁହଁର ଠାଣି ସଫା ବାରି ହୋଇ ପଡ଼ୁଛି । ଗମ୍ଭୀର, ଅଟଳ, ଆଇନର ଦଉଡ଼ି ଉପରେ ଶୂନ୍ୟେ ଶୂନ୍ୟେ ପାଦ ପକାଇ ଚାଲିବାକୁ ଭାବନା ଅଭ୍ୟସ୍ତ ହେଲଣି । ପରିଷ୍କାର ବାରି ହୋଇ ପଡ଼ୁଛି । ଏ ମନରେ ଆଉ ସନ୍ଦେହ ନାହିଁ । ସ୍ଥିର ବିଶ୍ୱାସ ଓ ଦୃଢ଼ ଧାରଣା ଆସିଛି ଭଲମନ୍ଦ ଉଚିତ ଅନୁଚିତ ବିଷୟରେ । ସେହିପରି, ଏ ମନରେ ଆଉ କୁତୂହଳ ନାହିଁ, ଅନୁସନ୍ଧିତ୍ସା ନାହିଁ, ନୂତନ ଅନୁଶୀଳନ ପାଇଁ ପ୍ରବୃତ୍ତି ନାହିଁ । ଗୋଟାଏ ଧାରଣା, ଯାହା ମୁଁ ବୁଝିଛି ତା ଠିକ୍ । ଆଉ ସବୁ ଭୁଲ୍ । ଦୂରରୁ ଦେଖି ବି ଠାସୁକୁ ମାରି ଜେଜେଗୁଡ଼ିଏ କଥା ଯୁଆଙ୍କ ବିଷୟରେ କହିହେବ, ଚୁଟ ଓ ବ୍ୟବହାର ବିଷୟରେ । କହିହେବ, ସେ ଛୁଆଙ୍କ ସଙ୍ଗେ ହୋ ହୋ କରିବେ ନାହିଁ, ସେ କେବେ ଦୌଡ଼ିବେ ନାହିଁ, ସେ ଆପଣା ଭାତ ଥାଳରୁ ପରକୁ ଟହଳେ ଭାତ ଦେବେ ନାହିଁ । ଲୋକେ ଯେତେ ପଛେ ଦେଖି ଥାଆନ୍ତୁ, ସେ ଟୋ ଠା ଭିକାରିକ ପଇସାଟିଏ ଦେବାକୁ ମନା କରିଦେବେ । ମୋଟେ ତାଙ୍କୁ ଅଖାଡ଼ୁଆ ଲାଗିବ ନାହିଁ । ସେହି-ପରି ଭଦ୍ର, ସମ୍ଭ୍ରାନ୍ତ, ଗମ୍ଭୀର ।

ଘରର ଆରପଟଟା ବି ସେହିପରି ଭାବରେ ବିବର୍ତ୍ତିତ, କେବଳ ସେ ପୁରୁଷ ହେଲେ ସେ ସ୍ତ୍ରୀ । ସେ ପଇଁଚାଳିଶ ହେଲେ, ସେ ଚାଳିଶି । ତାଙ୍କ ମୁଣ୍ଡ ଚନ୍ଦା ନୁହେଁ, କିନ୍ତୁ ବାଳ ଅଧେ ଅଧେ ପାଚିଗଲାଣି । ଚେକା ଗୋରା ମୁହଁରେ ମାଦଳା ରୂପେଲି ଗମ୍ଭୀରତା । ଫୁଲ୍ଲକା ଗାଲ ଓହଳି ପଡ଼ିଲାଣି । ବେକ ମୋଟା ହୋଇ ଯେପରି କି ସାନ ହୋଇ ଯାଇଛି । ପରିପୁଷ୍ଟ ଅବସ୍ଥାଠୁଁ ଅଧିକ ପରିପୁଷ୍ଟ ସେ ଦେହ । ଏକର ସେକର ବୁଲିଗଲେ ଲାଗେ ଯେପରି କି

ଗୋଟିଏ ଗ୍ରେଣ୍ଟିଆ ରଥ ବାଙ୍କ ବୁଲୁଛି । ପାତିବ୍ରତ୍ୟ, କର୍ତ୍ତବ୍ୟ, ସ୍ୱାମୀ, ସନ୍ତାନ, ସଂସାର ଏ ସବୁର ଗୌରବ ଖଣ୍ଡହୋଇ ଠିକ୍ - ପରି ସ୍ତୂପର ନଇ ଗୋଟିଏ ରଥ ଆଉ ଗୋଟିଏ ରଥକୁ ମୁହାଁମୁହିଁ ଲୁହେଁ ।

ବସ୍ତୁରପତି ସେହି ମୂର୍ତ୍ତିକୁ ମନେ ପକାଉଥିଲେ । ଅନ୍ୟମନସ୍କ ହୋଇ ବେଳେ ବେଳେ ମୁଣ୍ଡ ଝୁଙ୍କାଉଥିଲେ । ବେଳେ ବେଳେ ତଣ୍ଟି ଭିତରୁ ଗୋଟାଏ ଲେଖାଁ ସାନ ସାନ ଗର୍ଜନ କାଢ଼ୁଥିଲେ, ଯାହାକୁ ଅର୍ଥ କରିବାକୁ ହେବ 'ହୁଁ' ବୋଲି । ବେଳେ ବେଳେ କାଗଜରେ ଗାର ପକାଉଥିଲେ । ମକଦ୍ଦମା ଆରମ୍ଭ ହେବା ପୂର୍ବରୁ ଦୁଇ ପାଖର ଓକିଲ ଆପଣା ଆପଣା କାହାଣୀର ଅଇନଗତ ତାତ୍ପର୍ଯ୍ୟ ବୁଝାଇବାରେ ଲାଗିଛନ୍ତି । ବସ୍ତୁରପତି ମୁଣ୍ଡ ଝୁଙ୍କାଉ ପଥରିଆ ଗୃହାଣିରେ ଅନାଇ ରହୁଥିଲେ । ଚହଲ ଚଞ୍ଚଳରେ ଭାବୁଥିଲେ—ତାଙ୍କ ସ୍ତ୍ରୀଙ୍କର ସେଦିନର ଚେହେରା ଯାହା, ଆଜି ଆଉ ନାହିଁ । ସେଇ ହସ, ସେଇ କୁତୂହଳ, ସବା ଉପରେ— ସେହି ଆଗ୍ରହ, ଯାହା ଆଜି ନାହିଁ । ବହୁକାଳ ମନର ଶୋଷ ମନରେ ହିଁ ମରିଛି । କରୁଣା ସମସ୍ତ ଲେଉଟାଇ ହୋଇନାହିଁ ।

ସେମାନେ ପରସ୍ପରଠୁ ଅନ୍ତର ହୋଇ ନାହାନ୍ତି, ତା'ର କାରଣ ସେମାନେ ସେକଥା ଭାବ ନାହାନ୍ତି । ସେମାନେ ଧରି ନେଇଛନ୍ତି - ଏମିତି ହୁଏ, ଧରି ନେଇଛନ୍ତି ଜୀବନଟା ଝୁଙ୍କାଦେଇପା ଦଆଁନଆ ବେଉସା । ସେଠି କବିତା, ମୋହ, ସ୍ନେହବୃତ୍ତାଣି, ପ୍ରତୀକ୍ଷା, ପୁଲକ, ଏସବୁ କଥା ପାଇଁ ମୋଟେ ସ୍ଥାନ ହିଁ ନାହିଁ, ଅଉ —ପୁନର୍ବାର୍ଥେ କ୍ରିୟତେ ଭାର୍ଯ୍ୟା । ପ୍ରକୃତି କ୍ରମେ କୃତ୍ରିମ ପ୍ରଜନନ ପ୍ରଣାଳୀରେ ହୋଇ ପାରୁଛି । ସେଥିପାଇଁ ସ୍ତ୍ରୀ ପୁରୁଷ ଚହ୍ଲାଚହ୍ଲି

ଭେଟାଭେଟି ହେବା ବି ଦରକାର ନାହିଁ । ସମ୍ପର୍କଟା ହେଲାଣି ଆସି ଅତ୍ୟନ୍ତ ବେପାରୀ ସମ୍ପର୍କ । ଜଣେ ଟଙ୍କା ଆଣି ଦେବ, ଆଉ ଜଣେ ତାକୁ ଗଣି ନେଇ ଆପଣା ପାଖେ ରଖିଦେବ । ଜଣେ ବସି ବସି ଗପ ଲେଖୁଥିବ, ଆଉ ଜଣେ ଘରକରଣା ବୁଝୁଥିବ, ରାନ୍ଧୁଥିବ, ଆକଟ କରି ଚାକରବାକରଙ୍କୁ ଶୋଧୁଥିବ ।

ଏପରି ଦୁଇଜଣଙ୍କ ଭିତରେ କଣ ଡୋର ବନ୍ଧା ହୋଇଛି, ତା ତାଙ୍କ ଆଖିରେ ପଡ଼ୁନାହିଁ । ଓଲଟି ସେ ଭାବନ୍ତି ବହୁଦିନୁ ତ ସେ ଆଉ ତାଙ୍କ ସ୍ତ୍ରୀ ପ୍ରକୃତରେ ଅଲଗା ଅଲଗା ହୋଇଗଲେଣି, ଆଉ ବେଶି ଦୂର ଯିବାକୁ ମନ ଅନେକଥର ଇଚ୍ଛା କରୁଥିବ, ଆଟକୁଛି ଖାଲି ସଂସ୍କାର । ସେଥିରେ ସମାଜଭୀତି ଭୟ ହିଁ ବେଶୀ—କାଳେ କିଏ ଦେଖି ପକାଇବ । କାଳେ କିଏ କଣ କହିବ । ଏତିକି ନ ହେଲେ କେତେଥର ଅନ୍ୟ ନାରୀର ପାର୍ଶ୍ୱ ସୁଖ ଲଭିଛି । ଅନ୍ୟର ବ୍ୟବହାର ଅନ୍ୟର ରୂପଗୁଣ ମନକୁ ଆକୃଷ୍ଟ କରିଛି । କେତେଥର ଇଚ୍ଛା ହୋଇଛି ଯିବା ବାଟରେ ଥରେ ଅଟକି ଯାଇ କାହା ସହିତ କ୍ଷଣେ ହେଲେ ଦୁଃଖ ସୁଖ ହେବାକୁ । ଆଉ କେତେବେଳେ ଅନ୍ୟ କେଉଁ ସ୍ତ୍ରୀଲୋକର ସ୍ମୃତି ପ୍ରବଳଭାବେ ମନକୁ ଘାରିଛି, ଆଚ୍ଛନ୍ନ କରି ରଖିଛି ଦିନେ ଦୁଇଦିନ ତିନିଦିନ ଯାଏ । ଏଠି ତାଠାରେ ସେ ସୌମ୍ୟ ଶାନ୍ତ ନମ୍ରର ଉଦ୍‌ବେଗ, ଧୀର ପ୍ରବୀଣ ବୃଦ୍ଧପଣ । ଜାଣି ଜାଣି ଅପଣାକୁ ଆପେ ପ୍ରବୋଧନ୍ତି— ଏ ଜୀବନ କର୍ମମୟ, କାମର ସୃଷ୍ଟି କେବଳ ବଂଶବୃଦ୍ଧିପାଇଁ । ତା'ପରେ ତା'ର ଆଉ ପ୍ରୟୋଜନ ନାହିଁ, ସେ ଏକ ପାଗଳାମି । ନିଜ ଭିତରକୁ ନିରେଖି ଦେଖି ଅର୍ଥ କରନ୍ତି – ଏହି ଯେଉଁ ଧାରଣା ଅଛି ଯେ, ସ୍କୁଲର ଭଲ ପିଲାପରି ଚୁଟିମଣ୍ଡା

ମାରି ଖୁଙ୍କୁବୁକ୍ ନ ହୋଇ ମଡ଼ା ବାଟରେ ଗଲେ ଶୁଖି ଶୁଖି ଜୀବନ ସରିବା ଯାଏଁ ସା'ର ହେଉଛନ୍ତି । ଯେବେଳେ ବୋକ ଏମ୍ନ ଯେଉଁ ମନଭିତରେ ନଥାଁ ଜନ୍ମ ଉଠୁଛି, ଏ ଭଦ୍ରତାର ଖୋଳ ଖୋଲି ଫୋପାଡ଼ି ଦେଇ ରୂପ ଆଉ ଦେହ ଗୋଟେଇ ଭୋଗ କରିବାପାଇଁ । ଏଇ ଯେଉଁ ବ୍ୟର୍ଥତାର ହାହାକାର ମନ ଭିତରେ କୁହୁଳି ଜଳୁଛି, ଯେ ଏ ସଂସାରରେ ଫୁର୍ତ୍ତି ଓ ମଉଜପାଇଁ ଏତେ ବାହା ଚହଳୁଛି, ଅଥଚ ତାଙ୍କପାଇଁ କିଛି ନାହିଁ, ଏଣେ ଅପୁଷ୍ଟ ସରୁଛି, ଆପଣା ଅନ୍ତରକୁ କଳି ସେ ନିଶ୍ଚିତ କରିଛନ୍ତି ଏ ସବୁ ଧାରଣା କେବଳ ଦେହରୁ । ଖୋଳ ପରି, ଖୋଡ଼ା ପରସ୍ତ ପରି ଏସବୁ ଏ ଦେହରୁ ବାହାରି ଭାବନା ହୋଇ ଉଡ଼ି ଭୁଲିଯାଏ । ଏ ସବୁ କେବଳ ବିକାର । ମାର୍ଜିତ ଜୀବନ ଏ ସବୁ ବିକାରରେ ପ୍ରଭାବିତ ହୁଏ ନାହିଁ ।

ଗୋଟାଏ ସାଧାରଣ ୪୮୮ ଦଫା ମକଦ୍ଦମା ଆଗରେ ଆଉ ଥରେ ଆପଣାର ଏପରି ଭାବନାଗୁଡ଼ାକ ସେ ପରଖି ନେଲେ । ଯାହା ସେ କରି ନ ପାରନ୍ତି, ତା କରୁଛି ଏହି ଯୁବକ । ସେ ଭଦ୍ରତା ଜାଣି ନାହିଁ । ରୁଚି ବଦଳିଲା ମାତ୍ରେ ମାର୍ଗ ବଦଳେଇଛି । ପୂର୍ଣ୍ଣତାକୁ ଉପେକ୍ଷି ନୂଆକୁ ଧରିଛି । ଯାହାକୁ ସେ ଭାବନ୍ତି ଅନ୍ଧାର ମନର ଅସାମାଜିକ ବିକାର ବୋଲି, ତାକୁ ସେ କରୁଛି ଆଗ୍ରହ । ଯେ କୌଣସି ପଶୁପକ୍ଷୀ ତ ତାହା ହିଁ କରନ୍ତି, କିନ୍ତୁ ସେ ଏପରି ନିଷ୍ଠୁର ହୁଅନ୍ତି ନାହିଁ । ତା'ର ସବୁଠୁଁ ବଡ଼ ଦୋଷ, ଯାହା ସେ ନିଜେ କରିପାରିଥାନ୍ତେ ଅଥଚ କଲେ ନାହିଁ । ଯାହା ଏ ସଂସାରର ଅନ୍ୟମାନେ ବି କରନ୍ତି ନାହିଁ, ତା ସେ କରିଛି । ସୁତରାଂ ତା କଥା ଭାବିଲେ କେତେ ମନରେ ଈର୍ଷା ବି ଆସୁଛି । ଧୀରେ ଧୀରେ ରାଗ କୁହୁଳୁଛି । ସବୁଯାକ ସହାନୁଭୂତି ପଡ଼ୁଛି ଆରପାଟିର ଏଇ ସ୍ତ୍ରୀ ଲୋକଟି ଉପରେ । ମନ ହେଉଛି, ତାକୁ ସେ ସହାନୁଭୂତି

ଦେଖାଇ କଥା କହନ୍ତେ, ତା'ର କିଛି ଉପକାର କରନ୍ତେ । ପୁଣି ମନ ହେଉଛି, ତାଙ୍କୁ ସେ ସାନ୍ତ୍ୱନା ଦେଉଥାନ୍ତେ, ନିଷ୍ଠୁର ଅବହେଳାରେ ତାଙ୍କ ଯାହା ଶୁଖିଯାଇଛି, ଝାଉଁଳି ପଡ଼ୁଛି, ପୁଣି ସେ ସବୁ କଅଁଳି ଉଠନ୍ତା ତାଙ୍କ କରୁଣାର ସ୍ପର୍ଶରେ । ଅବଜ୍ଞାର ଓ ଅତ୍ୟାଚାରରେ ଆହତ ଏହି ସେ ନାରୀ. ଯୁଗ ଯୁଗର ଜଗତର ନ୍ୟାୟ ଦରବାରର ଦବୁଯାକ ନ୍ୟାୟ ତା'ର ଦୁଃଖ ଅପମାନର ଭାର ସମ୍ଭାଳିବାକୁ କାଣିଚିଏ ବି ଅଣ୍ଟିକ ନାହିଁ ।

ବୃଦ୍ଧ ଣିରେ ନଅଁ ଘୁଣ୍ଟି ମାର ବଚ୍ଚୁରପଣ୍ଡ ଦ୍ରବୋଧ ଅଡ଼କୁ ଅନାଇଲେ । ଆଜି ମକଦ୍ଦମା ଆରମ୍ଭ ହେଲା ।

ପ୍ରଥମ ଦିନ ତାରିଣୀର ସାକ୍ଷୀ । ସେ କାନ୍ଦିଲା ନାହିଁ— ପାଟି କଲା ନାହିଁ ଧୀରେ ଧୀରେ ତା ଉକିଲଙ୍କ ପ୍ରଶ୍ନର ଜବାବ ଦେଇଗଲା । ତା ସ୍ୱରରେ ଛପିଲା ଛପିଲା ଗଭୀର ବେଦନାର ରଙ୍ଗ ବାରି ହୋଇ ପଡ଼ୁଥିଲା । କଚେରୀ ଘରେ ଲୋକାରଣ୍ୟ, କିନ୍ତୁ ସମସ୍ତେ ଚୁପ୍ ଚାପ୍ । ସେ କେବଳ ମକଦ୍ଦମାରେ ସାକ୍ଷୀ ଦେଉ ନ ଥିଲା, ଯେପରି କି ତା'ର ଦୁଃଖ ସଂପୃକ୍ତ ଆବେଦନ ହାବଭାବରେ କଣ ଏପରି କିଛି ସୂକ୍ଷ୍ମ ମୁଦ୍ରା ସେ ସୃଷ୍ଟି କରୁଥିଲା, ଯାହାଁରେ ସେ ସୂଚନାରେ ସୂଚନାରେ ଭାଷାରେ କହିବାଠୁଁ ଅଧିକ ଭାବ ଫୁଟାଇ ପାରୁଥିଲା । ଯାହାଁରେ ଖବର ଥାଇ ବି ଦିନ ଲୋପ ହୋଇ ଯାଉଥିଲା ପରି ଲାଗୁଥିଲା । ଉଭୟପକ୍ଷ ଖାଲି ଦର୍ଶକ ଶ୍ରୋତା । ହେଲେ, ସମସ୍ତଙ୍କ ଅକ୍ଷି ଆଗରେ ତା'ର ସେ ଧୀର କ୍ଳାନ୍ତ ଗଳାରେ ତା ଘରକରଣାର ଜୀବନ, ପାଖୁଡ଼ା ପରି ଖୋଲି ଯାଉଛି । ତାପରେ ଆପୁଛି ଝାଇଁ ପବନ ପରି ସଞ୍ଜଭୁଣୀ । ତା'ର ଛୁଆ ପିଲା ନାହିଁ । ତା'ର ବୟସ ସାଙ୍ଗକୁ ସ୍ୱାସ୍ଥ୍ୟ ଅଛି । ସ୍ୱାମୀ କହେ ଯେ କୁଆଡ଼େ ତା ଆଖିକି ଭାରି ସୁନ୍ଦର ଦିଶେ । କଥା କହୁ କହୁ ସ୍ୱର ଥରିଯାଏ । ଗୁଣ୍ଡରେ

ଛଟିଲ କୁଶ ଲୁଚିଗଲ ପରି ଅପର ସ୍ତ୍ରୀର ପ୍ରଶଂସା କାହାଣୀ । ଦନ୍ତରେ ଦାନ୍ତ ଲାଗି ପଡ଼ିଯାଏ । ସଁ ସଁ ହୋଇ ଶବ୍ଦ ବାହାରେ । ପାଖୁଡ଼ା ଗୋଟି ଗୋଟି ହୋଇ ମଉଳି ଝଡ଼ି ପଡ଼ୁଛି । ସେଇ ପୁରୁଣା କାହାଣୀ । ଜଣକର ଦିନ ସରିଗଲା, ଆଉ ଜଣକର ଆରମ୍ଭ ହେଲା । ତାପରେ ଫେର ଦାରିଦ୍ର୍ୟର କାହାଣୀ । ଉପାସ ଭୋକ ଅନାଦରର ନମିନ ଇତିହାସ । ଆହା ଚୁ ଚୁ ଶବ୍ଦରେ ସରିଯାଉ ପୁଣିଲେ । ସେ ସମସ୍ତଙ୍କର ହିଁ ଦୁଃଖ — ସେ ଏ ଦେଶର ହିଁ ଦୁଃଖ ।

କିନ୍ତୁ ପ୍ରତିବାଦୀ ତରୁଣୀ ଉତ୍କଳ ସେକଥା ସ୍ୱୀକାର କରିବାକୁ ରାଜି ନୁହନ୍ତି । ଆରମ୍ଭ ହେଲା ତାଙ୍କ ଜେରା । ସ୍ୱାମୀଙ୍କ ସଙ୍ଗେ କାହା କାହାର ଚିହ୍ନା ଅଛି ? କିଏ ଯା ଆସ କରନ୍ତି ? ଖବର ବୁଝିବାକୁ ଆସନ୍ତି ନାହିଁ ? ଘରେ କଳି ଲାଗୁଥିଲା କି ନାହିଁ ? କିଏ ଆଗ କଳି ଆରମ୍ଭ କରୁଥିଲ, ତୁମେ ଆରମ୍ଭ କର, ନା ତୁମ ସ୍ୱାମୀ ଆରମ୍ଭ କରନ୍ତି ? ଯଦି ସ୍ୱାମୀ ଆରମ୍ଭ କରନ୍ତି କହୁଛ, କଣ କହି ସେ ଗାଳି ଦିଅନ୍ତି ? ତମର କି କି ଦୋଷ ଅଛି ବୋଲି ସେ ଦୁଆ ଦିଅନ୍ତି ? ତାଙ୍କ କହିବା କଥାକୁ ତୁମେ କି ଉତ୍ତର ଦିଅ ? ତୁମେ ଦୁହିଙ୍କ କଳିଆ ସନ୍ଧାବେଳେ କେବେ ପଞ୍ଚାୟତ ଉଠା ହୋଇଥିଲା କି ? ଏ କଥାଟା ବୁଝିଦେବା ବୋଲି କେହି ଲୋକ ଆସିଥିଲେ କି ? ଲକ୍ଷ—ଲକ୍ଷ ପ୍ରଶ୍ନର ବର୍ଷା, ଆଉ ତହିଁରେ ଉବେଇ ଝଟେଇ ହେଉଛି ସ୍ତ୍ରୀ ଲୋକଟି । ହଠାତ୍ ଲାଗିଲା — ସେ ଏ ପ୍ରଶ୍ନ ଜାଲ ଚଳିଆଉଡ଼ି ଦୁରଭିସନ୍ଧି ଦେଖିପାରୁଛି । ତା'ର ଚରିତ୍ର ଉପରେ ଆକ୍ଷେପ କରୁଛି ଏ ଅଚିହ୍ନା ମଣିଷଟି — ଯାହାକୁ ଉକିଲ ବୋଲି ତା'ର ସ୍ୱାମୀ ଠିଆ କରିଛି । ସେ ଭୁଲିଗଲା ସେ କଚେରୀରେ ଅଛି । ସ୍ୱଭାବଜାତ ଲୋକ ଚେତନାରେ ଗ୍ରାମ

ହେଲି ହୋଇ ବେକ ଉଦ୍ଧ୍ୱଁକେଇ ତାକୁ ହିଁ ଲକ୍ଷ୍ୟ କରୁଛନ୍ତି । ସବୁ ଭୁଲିଗଲା ସେ, ଆଜ ରାଗରେ ପାଚିଯାଇ ତା'ର ସ୍ୱାମୀ ଅଭୁଙ୍କୁ ହାତ ବଢ଼େଇ କନ୍ଦଣା ଭିତରେ ଚିତ୍କାର କରିଉଠିଲା—"ଏତେ ସାହାସ ତୋର ? ଏ ସଂସାରରେ କଣ ଧର୍ମ ନାହିଁ ? ତମ ଜିଭ ଛିଣ୍ଡି ପଡ଼ୁନାହିଁ କାହିଁକି ? ଅପଣାକୁ, ଆପଣା କୁଳକୁ, ଆପଣା ଚତୁର୍ଦ୍ଦଶ ପୁରୁଷଙ୍କୁ ଏମିତି ଭଡ଼ାହିଆ ତୁଣ୍ଡରେ ପକା ତୁମେ ମିଛ ଅପମାନ ଦେଉଚ, ଏ ଧରଣୀ ତମକୁ ସହୁଚି କେମିତି ? ମୋ ମୁହଁକୁ ଅନେଇ କଥା କହ ! କଣ କହୁଚ, ଏଇ ଏ ଉକିଲବାବୁ ଯାହା ମତେ ପଚାରୁଛନ୍ତି, ତା କଣ ସତ ? ମୁଁ କଣ ଦେ ସ୍ୱରୁଣୀ ? ଏ ଛୁଆ ହବେନି କଣ ବେଧ ଛୁଆ ? କହୁ ନ କାହିଁକି ?" ପାଗଳର ଆଖି ପରି ଟଳଟଳ ଆଖି । ଦେହରେ ଏକ ଅସାଧାରଣ ବ୍ୟସ୍ତତା, ଯେପରି କି ତା'ର ଜୀବନୀଶକ୍ତି ଏ ଦେହ ଛାଡ଼ି ଉଡ଼ିଯିବାକୁ ହିଁ ଛଟପଟ ହେଉଛି । ଫିକା ନାକଫୁଲ୍ଲା କାନ୍ଦୁରା ମୁହଁ, ମଉଳା ଯୌବନ । ଅପମାନରେ ରାଗରେ ଯେପରି କି ତା'ର ଦେହ ଉପରେ ଧାଇଁ ଚାଲିଛି । ଅତି ଚଞ୍ଚଳ ତା'ର ମନରୁ କୋହ ବଢ଼ି ବଢ଼ି ଚାଲିଛି । କଚେରୀ ଘର ବଦଳି ଯାଉଛି । ଯେପରି କି ଏ କାନ୍ଥ ନାହିଁ, ଛାତ ନାହିଁ । ଉପରେ ଦାଉ ଦାଉ କଳା ଆକାଶ । ଯେଉଁଠୁ ଗଳ ଗଳ ବର୍ଷା ଅନବରତ ହେଉଛି । ଝଲୁଛି ବଜ୍ର ଘଡ଼ଘଡ଼ି । ତୋଫାନ । ସୂର୍ଯ୍ୟ ନାହିଁ । ସୃଷ୍ଟିକାରିଣୀ ନାରୀ ଅପମାନ ପାଇ ରାଗରେ ପ୍ରତିଶୋଧ ନେବାକୁ ବସିଛି । ଛକେ ଯୋଡ଼ା ପାପୁଲିରେ ମୁହଁ ଘୋଡ଼ାଇ ମୁଣ୍ଡ ନୁଆଁଇ ବସି ରହି ଶୋକ ଭିତରେ ସାନ୍ତ୍ୱନା ଖୋଜୁଛି ମଣିଷ । କଚେରୀ ଘର ବଦଳି ଯାଉଛି । ମନୁଷ୍ୟର ଅନୁଷ୍ଠାନ ଲୋପ ପାଇ ଯାଇ ଜଙ୍ଗଲି ଆସିଛି ଆଜ ଯୁଗ ।

"ଶୁଣ, ଶୁଣ ମା, ଅଧୀର ହୁଅ ନାହିଁ" ଚାରି ତରଫ ଉକିଲ

ବୋଧିଛନ୍ତି । ପ୍ରେ କଚେରି, ପ୍ରେ ସେ ଯାହା ପଚାରୁଛନ୍ତି ତାଙ୍କର ଉତ୍ତର ଦିଅ । ମନ ବ୍ୟସ୍ତ କର ନାହିଁ ।"

ଆଉ ତରଫ ଓକିଲ ହାକିମଙ୍କୁ ଜଣାଉଛନ୍ତି "ଦେଖନ୍ତୁ, ହଜୁର ପ୍ରେ ଯେମିତି ହେଲେଣି ମୁଁ ଆଉ କି ପ୍ରଶ୍ନ ପଚାରିବି ? କଚେରୀର ସବୁ ନିୟମ ପ୍ରେ ଭାଙ୍ଗୁଛନ୍ତି । ଯାଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରାଯାଉ ।

କିନ୍ତୁ ସେ ସେତେବେଳେ ମାତିଛନ୍ତି ।

କହୁଛି କାହିଁକି ମୁଁ ଥାଇଲି ଏଠିକି ? କଣ ମକଦ୍ଦମା ଜିଣିଲେ ଗଉରବ ପାଇବ ବୋଲି । ସେତିକି ଦଣ୍ଡ ହେବାରୁ ଥାଇଲି ପିଲା ! ଖାଲି ପ୍ରେ ପିଲା ଦାଣ୍ଡାଙ୍କପାଇଁ । ଯେମନେ କେମିତି ବଞ୍ଚିବେ ବୋଲି । ତେଣେ ତେମେ ଟୋକୀ ଭାରିଯା ଦେନ ମଉଜ ମଜଲିସିରେ ମାତିଛ . ତମ ପଇସା ନାଳରେ ବୋହିଯାଉଛି, ଏଣେ ଏ ଛୁଆ ଦାଣ୍ଡା ଉପାସ ଭୋକରେ ଗଡ଼ୁଛନ୍ତି । ତାଙ୍କ ମନ୍ଦ ଗନ୍ଧ ପଚାରୁଛନ ହିଁ । ବାପ ହେଇଥିଲ ପରା ! ଛି ତମ ମୁହଁକୁ ? କିଏ ସେ ବଡ଼ଲୋକ ହେଲା—ଏଇଠିକି ଆସିଲେ ମୋ ଦୁଃଖ ମେଣ୍ଟିବ । ତେମେ ବଡ଼ଲୋକ ଏ ଦେହ ଉପରେ କୋରଡ଼ା ମାଡ଼ ।' କଚେରି ଘରେ ସମସ୍ତ ତା ପଟିଆ, ଲୋକ ଉତ୍ତେଜିତ ହେଲେଣି । ନାନା ତୁଣ୍ଡରେ ନାନା ପ୍ରକାର ମନ୍ତବ୍ୟ — 'ଓହୋହୋ' ଧୋର କଳିକାଳ ଆରେ ମାଇପି ଜାତି ଲୁହରେ ଭୁବନେଶ୍ୱର ଧ୍ୱଂସ ହୋଇଗଲା, ଆଜି ଗ୍ଳାର ଏଇଟା'—ଏ ଧେଡ଼ଟା ।' ପୁଣି ପଛଆଡ଼ୁ ଦୁ'ଆଖିମୁହଁ ସେ ଯାଆଁ ପଇଁଠି ମଣିଷ କାନ୍ଥପରି ଠିଆ ହୋଇଛନ୍ତି ତା ପଛଆଡ଼ୁ ବଳ ମ, ବନାମ ବଚାକୁ । ଆରେ ବେକରୁ ଧରି ପକେଇ ଦିଅ ଥୋଇଦେଲେ ନାଗରପଣ ବାହାରିଯିବ । ପିଲା ଘର ଫିଟି

ଦେଖାଉଚ । "ପ୍ରକାସିଉ ହେଇ ହେଇ, ଲୋକଙ୍କର ହାଉ ହାଉ । 'କଣ ହେଲା' କଣ ହେଲା ବୋଲି ଆହୁରି ଲୋକ ଧାଇଁ ଆସୁଛନ୍ତି । ବିଚାରପତି ମୁଣ୍ଡ ଟେକି ନିର୍ଦ୍ଦେଶ ଦେଲେ "ସମସ୍ତେ ଚୁପ ହୁଅନ୍ତୁ ।"

ଲୋକେ ତାଙ୍କ ମୁହଁକୁ ଚାହିଁଲେ । ସେଠି ଯେପରି କି ଅସାଧାରଣ ଭାବେ ଗମ୍ଭୀର ଭାବୁକତା ଲେଖା ହୋଇଥିଲା । କାଠ ପଥରର ମୁହଁ ତ ନୁହଁ, ଏକ ସହାନୁଭୂତିଶୀଳ ଜୀବନ-ଅଭିଜ୍ଞ ମଣିଷର ମୁହଁ । ଗୋଳମାଳ ଚୁପ ହୋଇଗଲା ।

କିନ୍ତୁ ତା ପରେ ଦେଖାଗଲା—ପ୍ରତିବାଦୀ ତରଫର ଓକିଲଙ୍କର ଆଉ ଉତ୍ସାହ ନ ଥିଲା । ଅଳ୍ପ କେଇଟା ଏଣୁ ତେଣୁ ପ୍ରଶ୍ନ ପରେ ସେ ଜେରା ଶେଷ କଲେ । ଗୋଟିଏ ଗୋଟିଏ ହୋଇ ବାଦୀର ଛଅଟି ଯାକ ସାକ୍ଷୀଙ୍କ ସାକ୍ଷ୍ୟ ସରିଲା ।

ତାପରେ ତା'ର ଆବେଦନ । ସେ ଦିନଟି ବି ଲୋକାରଣ୍ୟ । ସେ ଦିନ ପ୍ରତିବାଦୀ ତରଫର ସାକ୍ଷୀ । ପ୍ରତିବାଦୀର ଓକିଲ ଜେରା ଆରମ୍ଭ କଲାବେଳକୁ ତା ପଟଟା କେମିତି ନିର୍ଜୀବ ହୋଇଗଲା । ଏତେ ଲୋକଙ୍କ ଦୃଷ୍ଟି ଆଗରେ ସେ ସଙ୍କୁଚିତ ହୋଇଯାଉଛି । ଯେପରି କି ଆଉ ତା'ର ମୁଣ୍ଡ ଉଠେଇବାକୁ ସାହାସ ହେଉ ନାହିଁ ତା'ର ଉଦ୍ଦେଶ୍ୟ ଯେପରି କି — ଯାହା ତାହା କରି ଉତ୍ତର ଦେଇ ସେ ଏଥିରୁ ନିସ୍ତାର ପାଇଲେ ହିଁ ଯଥେଷ୍ଟ । ଆଉ ଅଧିକା ତା'ର ଲୋଡ଼ା ନାହିଁ । ସରିଗଲା ବି ବଡ଼ ଜଲ୍ଦି । ଆଠ ଜଣ ସାକ୍ଷୀରୁ ପାଞ୍ଚଜଣଙ୍କୁ ଆଦୌ ସେ ଦେଲହିଁ ନାହିଁ । ଆଉ ତିନିଜଣ ଠିକେ ଠିକେ କହି ବିଦା ହେଲେ ।

ତାହିଁ ଆବେଦନ ଦୁଇ ପକ୍ଷ ଓକିଲଙ୍କ ଭିତରେ ସାମାନ୍ୟ ଅଳ୍ପ ପେଡ଼ାପେଡ଼ି ପରେ ବନ୍ଦ ହୋଇ ଦିଆ ହେଲା । ଲୋକେ

ଯାହା ଆଶା କରିଥିଲେ ହେଲନାହିଁ । ସେ ପ୍ରତିବାଦୀ ସ୍ୱାମୀ ବାଦୀ ସ୍ତ୍ରୀକୁ ସେ ସ୍ତ୍ରୀର ଓ ତା ସନ୍ତାନ ଦୁହିଁଙ୍କର ଖୋରାକ ପୋଷାକ ପାଇଁ ମାସକୁ ୪୦ଟଙ୍କା ଲେଖାଁ ଦେଉଥିବ ।

ସ୍ତ୍ରୀ ଲୋକଟି ହସିଲା ନାହିଁ, ଯାଚି ଫିଙ୍ଗାଇଲା ନାହିଁ । ସେ ଯେଉଁ ମଣିଷ ଗହଳିରୁ ଆସି ପହଞ୍ଚିଥିଲା, ପୁଣି ସେ ଗହଳି ଭିତରେ ମିଶିଗଲା । ଯେପରି କି ସେ ଖାଲି ଏକ ଛାଇ । ଦୁଃଖ ପାଇ ବି ଦୁଃଖ ଅନୁଭବ ନ କରିବାକୁ ଅଭ୍ୟାସ କରି କରି ସେ ଯେପରି କି ସୁଖ, ଆନନ୍ଦ ଅନୁଭବ କରିବା ଶକ୍ତି ବି ହରାଇଛନ୍ତି । ବିଚାରପତି ତାକୁ ମନେ ମନେ କଳି ନେଲେ ମୁହୂର୍ତ୍ତେ । ତାପରେ ପୁଣି ସେ ମୁହଁ ବହିପତ୍ର ଉପରେ ଢଳିପଡ଼ିଲା !

ବିତିଗଲା ଦଶମାସ । ମଝିରେ କେତେ ମକଦ୍ଦମା ଆସିଲା । କେତେ ଫଇସଲା ବି ହେଲା । ହଜାର ହଜାର ଲୋକଙ୍କ ଜମାନବନ୍ଦି ଲେଖା ହୋଇ ରହିଲା ବିଚାରପତିଙ୍କ ନଥି ଭଣ୍ଡାରରେ । କେତେ କଥା ଗୃହପୋଡ଼ାର ଇତିହାସ । କେତେ ଖାଲି ମୁଠି ଉଞ୍ଚାଉଞ୍ଚିର, କେତେ ଖାଲି ଚଢ଼ାଚଢ଼ି ଗାଳିର, କେତେ ହଣାହଣି ଭୁଷାଭୁଷିର, ମଣିଷ କେମିତି କୋଡ଼ି ଫାଳଆରେ ଅନ୍ୟ ଲୋକ ଦେହରେ ଚୋଟ ମାରେ । ପୁଣି ସେ ଦେହ ବା କେମିତି ଯେ, କୋଡ଼ି ଫାଳ ଲାଗି ଫଡ଼ା ଫଡ଼ା କଟି ନହୁ ଲୁହାଣ ହେଲେ ବି ମଣିଷ ମରେ ନାହିଁ । ପୁଣି ବଡ଼ ବଡ଼ ଶ୍ରେଣୀର ଡକାଏତିମାନ, ଜାତି ଜାତିକା ମକଦ୍ଦମା । ଅହୁରି କେତେ—ଖବର କାଗଜରେ ଯେଉଁଥିପାଇଁ ହୁରି ପଡ଼େ । ୪୯୮ ଦଫାର ମକଦ୍ଦମା ବି ବହୁତ ପଡ଼ିଲା, ବହୁତ ଫଏସଲା ହେଲା । କଚେରୀଘର ଭିତରକୁ କେତେ ସ୍ତ୍ରୀ ଲୋକ ଆସି ନ୍ୟାୟ ନେଇ ଚାଲିଗଲେ । ତା'ର କାହାଣୀ ମନ ଭିତରେ ଜାଣି କେତେ ତଳେ ରହିଗଲା, ଭୁଲି ହୋଇଗଲା ।

ତା ପରେ ଦେଖାଗଲା—ଦଶମାସର ଗୁଜଣ ଟଙ୍କ ପଇଁ ଦିନେ ସେ ଆସିଛି ଡିକ୍ରୀଜାରି ଦରଖାସ୍ତ ନେଇ ଦେବାକୁ । ଯନ୍ତ୍ର-ମନ୍ତ୍ର ଭାବରେ କେଉଁଠି ଚଞ୍ଚଳ ଏ ଦୁନିଆଁ ବଦଳୁଛି । ଜାଲପରି ଲାଗୁଛି । ସେ ମକଦ୍ଦମା ଜିତି ଡିଗ୍ରୀ ନେଇଥିଲେ । ଆଜି ହେଲାଣି ଆସି ବର୍ଷେ । ଏଇ ବର୍ଷକ ଭିତରେ କ'ଣ ହୋଇଥିବ ତା'ର ଇତିହାସ ? କେମିତି ଚଳିଥିବ ? ପିଲାଙ୍କୁ କଣ ଖୋଇ ବଞ୍ଚେଇଥିବ ? ଆଖିତଳେ କାଳିଆ ବଡ଼ି ପଡ଼ିଛି । ମୁହଁ ଯେମିତି କି ସେକୁର ଯାଉଛି । ଦେହ ଶୁଖି ଯାଇଛି । ପାଣିରେ ଆପଣା ପ୍ରତି ଅବହେଳା, ଗୁହାଣିରେ ବିଦ୍ରୂପ, ଚିନ୍ତାତପର । ସେ ବହୁତ ବଦଳିଛି, ବୟସ ବର୍ଷେ ବଢ଼ିଲେ ଚେହେରାରେ ବଢ଼ିଛି ପାଞ୍ଚବର୍ଷ । ଡିଗ୍ରୀ ଜାରିର ତାରିଖ ହେଲା । ପୁରୁଷ ଖାଲି ମହଲତ ଦରଖାସ୍ତ ପକାଇ କେବଳ ଟାଳଟଳ କରିବାକୁ ବୁଝେ । ହାକିମ ମହଲତ ଦେବାକୁ ମନା କଲେ । ହୁକୁମ ହେଲା, ପନ୍ଦର ଦିନ ଭିତରେ ଟଙ୍କା ଦେଇଦିଅ । ଆଶ୍ଚର୍ଯ୍ୟ ହୋଇ ସେ ସ୍ତ୍ରୀ ଲୋକଟିକୁ ଅନାଇଲେ, କାହିଁ ତା ଆଖିରେ ଆନନ୍ଦର ଚିହ୍ନ ? ବିଜୟୀର ଚିହ୍ନ ? ଯେମିତି ଆଗ ପରି ସେ, ଘଟଣା ଘଟିଲେ ବି ତାଠୁଁ ପ୍ରତ୍ୟୁତ୍ତର ନାହିଁ । ଦୀର୍ଘଶ୍ୱାସ ପକାଇ ଆପଣାର ଅଯାଚିତ ସହାନୁଭୂତିର ପୂର୍ଣ୍ଣଚ୍ଛେଦ ଦେଲେ ।

ପୁଣି ଏକ ତାରିଖ । ସେ ଦିନ ବି ଦୁଇପକ୍ଷ ମୁହାଁମୁହିଁ—ପୁରୁଷ ଯେପରିକ ବେଖାତିର, ବିରକ୍ତ । ପାନ ଚୋବେଇ ଚୋବେଇ କାନ ବୁଲୁଛି, ଉଡ଼ା ପେନ୍ସିଲପରି ଗୋଟିଏ ଗୋଡ ଦବୁଛି ଉଠୁଛି । ତା ପକ୍ଷରୁ ଆହୁରି ଏକ ମହଲତ ଦରଖାସ୍ତ ! ସ୍ତ୍ରୀ ତରଫରୁ ଓକିଲଙ୍କ ଦ୍ୱାରା କରୁଣ ଆବେଦନ ଯେ ହଜୁର ସେ ଟଙ୍କା ଦେବ ବୋଲି ହୁକୁମ ହୋଇ ହେଲାଣି ଏକ ବର୍ଷ । ତା ଆଗରୁ ବି ପାହୁଲାଟିଏ ଦେଇ ନ ଥିଲେ, ତା ପରେ ବି ନାହିଁ । ଏମିତି ମହଲତ ନେଇ

ଠକ ଠକକା ଯେ ଭୁଲିଥିବେ, ସେତେବେଳ ଯାଉ ଛେଛେ । କେହିବେ ନାହିଁ କହୁ । ଭୁଲରେ ପ୍ରତିବାଦୀ ସେତେବେଳେ ଟିକଏ ମୁରୁକି ହସିଥିଲ, ଆଜି ଠିକ୍ ସେତିକବେଳକୁ ତା ମୁହଁର ମୁରୁକି ହସ ଦେଖିବାକୁ ଥିଲ ବଳୁରପନ୍ତଙ୍କୁ । ସେ ସଙ୍ଗେ ସଙ୍ଗେ ହୁକୁମ ଲେଖି ଜଣାଇ ଦେଲେ ପ୍ରତିବାଦୀ ୪୮୦୯ ଖୋରାକ ପୋଷାକ ନ ଦେବାରୁ ତାକୁ ଛଅମାସ ଜେଲ ଦଆଗଲ ।

ଜେଲ୍ !

ଲୋକଟାର ମୁଣ୍ଡରେ ଗଜ୍ର ନାହିଁ ପଡ଼ି ! ଯେମିତି ଥିଲ, ସେମିତି ହୋଇଛି । ଯେପରି କି ଅପେକ୍ଷା କରିଛି, ଆଜ କଣ ଶୁଣିବ ଯେ, ଯେପରି କି ତା'ର ବଳୁରଣୀ ସନ ନାହିଁ । ଆହୁରି ବାକି ଅଛି । ନା, କଥା ଗୁଡ଼ାକ ଧୀରେ ଧୀରେ ତା ମୁଣ୍ଡ ଭିତରେ ଗଳୁଛି । ପାଟିଟା ଆଁ ହୋଇ ଯାଉଛି । ଆଖି ଦୁଇଟା ଫାଡ଼ି ହୋଇ ଯାଉଛି । ଧଳା ହୋଇଥିବା ଲମ୍ବା ଲମ୍ବା ମୁଣ୍ଡବାଳ, ମୁହଁ ପିନ୍ଧା ଲମ୍ବା ଲମ୍ବା ହାତ ଅଙ୍ଗରଟି, ଦାମୀ ଜୋତିଆ କାମିଜ, ବାସି ଧୋବ ଲୁଗା, ସବୁ ଝାଙ୍କି ହୋଇ ଫଡ ଫଡ଼ ହୋଇ ଥରି ଉଠୁଛି । କେବଳ ଭେକ ନୁହେଁ, ଏ ତାଂର ଭଦ୍ରତାର ଖୋଳ, ତା'ର ଦେହ-ଘର, ଟଳ ଟଳ ଉଠୁଛି । ଦ' ପାଖରୁ ଦ' ଜଣ କନ୍ଷ୍ଟେବଲ୍ ପହରିବାଲ ଯେମିତି ତା ପାଖକୁ ଘୁଞ୍ଚିଆସି କହିଲେ—ଚାଲ, ଚାଲ, ଯେମିତି ତା'ର ସବୁ ଟାଣ ପାଣି ପାଇଯାଇ ଝୋପା-ଝୋପା ଲୁହ ଝରିପଡ଼ିଲ । ଆଉ ସେ ଭଙ୍ଗା ଭଙ୍ଗା ଗଳାରେ ଚିତ୍କାର କରିଉଠିଲ "ଜେଲ୍ ! ଜେଲ୍, ନାହିଁ ହଜୁର, ମତେ ଜେଲ୍ ଦଅନ୍ତୁ ନାହିଁ ।"

ବିଚାରପତିଙ୍କ ଏକାଠି ଯାବ ପଡ଼ିଥିବା ସରୁ ୨୦ ଦ' ଫାଳ ମଝିରେ ଚାରି ଅଗୁଳ ଟାଙ୍କି ହୋଇ ଲମ୍ବେଇ ହୋଇଗଲେ ।

ବନ୍ଧୁଜନର ଏକ ଅଭ୍ୟସ୍ତ ଭଙ୍ଗୀ, ହସ ଲୁଚେଇ ହସିବା ପାଇଁ, ଓକିଲ ଯେମିତ ପନ୍ଦରଟ ସ୍ୱେଟୀର ଶେଷ ଚଣ୍ଡେ ଘଡଘଡ ଧ୍ୱଂସ ଚାହାଁ, ଯେମିତ ଦଣ୍ଡାଦେଶ ଶୁଣାଇ ଦେବା ପରେ ଦଣ୍ଡିତ ବ୍ୟକ୍ତିର ଏଭଳି ଭାବ-ଭଙ୍ଗୀ ସହିତ ତାଙ୍କର ପଚାଶ ବର୍ଷର ପରିଚ୍ଛିନ୍ନ । ଦୟା ଆସେ ନାହିଁ, ଓଲଟି ଆସେ ଆତ୍ମତୃପ୍ତି — ଯେ ମୁଁ ମୋର କର୍ତ୍ତବ୍ୟ କରିଛି । ଯେଉଁ ସେ ମୂହୂର୍ତ୍ତ, ଯେତେବେଳେ ଦଣ୍ଡ ଆଦେଶ ଶୁଣିଥିବା ଲୋକର ବଦନ ଦେଖିଲା ବେଳେ ତାଙ୍କୁ ଲାଗେ । ସେ ଯେଉଁ ଆଇନ ବଳରେ ସେ ମଣିଷଟାକୁ ଦଣ୍ଡ ଦେଲେ, ସେ ମଣିଷ-ଗଢ଼ିଲା ଆଇନ ନୁହେଁ । ତାକୁ ଈଶ୍ୱର କରିଛନ୍ତି, ଆଜି ସେ ନିଜେ ସେହି ଈଶ୍ୱରଙ୍କର ହିଁ ପ୍ରତିନିଧି, ଧର୍ମ ଅବତାର ।

"ନାଇଁ ନାଇଁ ମୁଁ ଜେଲ୍ ଯିବି ନାହିଁ, ମତେ ଜେଲ୍ ଦିଅନ୍ତୁ ନାହିଁ — ହଜୁର ମୁଁ ଭଦ୍ରଲୋକ, ମୁଁ କିଛି ଦୋଷ କରି ନାହିଁ -

ଏକ ତୀବ୍ର ଗୁହାରିରେ ତାଙ୍କୁ ଭୁଷାଏ ମାତ୍ର ବନ୍ଧୁଦମ୍ପତି ହାଙ୍କିଲେ "ନେଇଯା ତାକୁ, ଚପ୍ରାଶୀ, କଣ ଦେଖୁଚ ?" ଆଉ ବନ୍ଧୁ-ପତ୍ନୀଙ୍କ ନିର୍ଦ୍ଦେଶରେ ପହରା ଦୁହେଁ ତା ଦେହରେ ହାତ ପକାଇ ତାକୁ ଓଟାରିବାରେ ଲାଗିଲେ । ଆଉ ଠିକ୍ ସେତିକି ବେଳେ ସମ୍ଭବ୍ୟ ପରିଣାମକୁ ଠେଲି ପକାଇ ଆଇନ ଓ ନ୍ୟାୟ ଚତ୍ୱରର ମାନକୁ ଜନକୁ ଅଣ୍ଡେଇ ଦେଇ ଆସିଲା ସେ ନାରୀ, ବର୍ଷେ ହେବ ଯେ ମକଦ୍ଦମା ଲଢ଼ୁଥିଲା । ପାଗଳ ପରି ହଠାତ କରି ପିପଲା ତଳେ ଠିଆ ହୋଇ କହିଲା "ହଜୁର, ରକ୍ଷା କରନ୍ତୁ, ମତେ ଯାହା କହିବେ, ମୁଁ ତା ଲେଖିଦେବି । ମୋ ସ୍ୱାମୀଙ୍କୁ ଜେଲକୁ ପଠାନ୍ତୁ ନାହିଁ ।"

ଝରଝର ଲୁହ ନିଗିଡ଼ ତା'ର ପାଟିରେ ପଶୁଛି, କାନ୍ଦି କାନ୍ଦି କଣା କହୁଛି "ଜେଲକୁ ପଠାନ୍ତୁ ନାହିଁ, ଜେଲକୁ ପଠାନ୍ତୁ ନାହିଁ ।

ମୋର କିଛି ଧନ ଦରବ ଲୋଡ଼ା ନାହିଁ। ଖୋରାକ ନ ଦେଲେ ନ ଦେଉ ପଛେ। ଭୋକ ଉପାସରେ ପଡ଼ି ମରିବି, ଏ ଦୁଃଖ ସହି ପାରିବି ନାହିଁ। ମୁଁ ବ୍ରାହ୍ମଣୀ ସବୁ ଠକା ବୁଝି ପାଇଲି। ଆପଣ ସ୍ୱାମୀଙ୍କ ଜେଲ ଦିଆଇଲେ, ଆଉ କଣ ନ କରିବେ।"

ପ୍ରହରୀ ଭୁଲି ଯାଇଛନ୍ତି, ଆଦେଶ ହୋଇଥିଲା ଯୁବାକୁ ତୁରନ୍ତ ପଦାକୁ ନେବାକୁ ହେବ ବୋଲି।

ହାକିମ, ପେସ୍କାର, ଓକିଲ, ଦେଖଣାହାରୀ— ସମସ୍ତେ ଭୁଲିଯାଇଛନ୍ତି ଯେ ମକଦ୍ଦମା ବାକିର ପରିଣତି ବୋଲି। ବରଂ ଲୋକ ବେଶି ବେଶି ଆସୁଛନ୍ତି। ହଠାତ୍ କଚେରିର ନଟଦା ନଗଦ କାରବାର ଜୀବନ ଭିତରେ ଯେପରି କି ଏକ ଅଭିନୟ ଅଭିନୟ ହୋଇଛି।

ସ୍ତ୍ରୀଲୋକଟି ନୀରବରେ ଝର ଝର କାନ୍ଦି ଲାଗିଛି। ମୁହୂର୍ତ୍ତକେ ସେହି ଦେଖା ପରଖା ସଂକ୍ଷିପ୍ତ ଦୃଶ୍ୟର ସ୍ଥଳୀ ବଦଳି ଯାଉଛି, ମିଳେଇ ଯାଉଛି। ଯେଉଁଠି ଏତେ ଦେହ ଥାଇ ବି ନ ଥିଲାପରି, କେବଳ ଭାବର ସ୍ୱାଁ ନାଟକ। ସେଠି ଆଉ କିଛି ନାହିଁ। ଖବର କାଗଜରେ କଣ କଣ ଶିରୋନାମା ଥିବ—ଖବର କାଗଜ ହକାରିଆ ତାକୁ ଭୁଲି ଯାଉଛି। ଆଖି ଫାଡ଼ ଫାଡ଼ ବେକ ଉଦ୍ଧକେଇ ଅନାଇଛି। ଅସଲ ଉକୁଣୀମାନ ଚର୍ମର ଉପକାରିତା ବିଷୟ ବର୍ଣ୍ଣାଉଥିଲା ଯେଉଁ ତେଙ୍ଗା ଲୋକଟି, ସେ ବି ଆଁ କରି ଖାଲି ଅନାଇ ରହିଛି। ସେହିପରି ଚଟିକନ୍ଧ-ବଙ୍ଗାଳି, ପଞ୍ଜି-ବଙ୍ଗାଳି, କଂଶୀ ବଙ୍ଗାଳି, ଚଟିଯୋଡ଼ା ହାତ ପକାଇ ଚଟି-ବଙ୍ଗାଳି, ଅଜ ଏଛ ଗାଁ। ମାମଲତକାର ଜଣେ, ବାଙ୍ଗରା ହୋଇ ଦୈଶିଷ୍ଟିଏ, କପୋଳରେ ଚନ୍ଦନ ଚିତା, ହସ ହସ ପ୍ରମାନ୍ତ ପାନଖିଆ ମୁହଁଟି, ମୁଁହପାକ କଦମଫୁଲିଆ ଚୁଡ଼ି, କୋଟରେ ବୋତାମ ନାହିଁ, କାଖ-

ତଳେ କାଗଜ ବସ୍ତାନି ଗଣ୍ଠିଏ ଦେଖିଲେ ଲାଗେ – ଗାଁ ପଣ୍ଡିତ ପ୍ରେ, ଏପରି ଯେଉଁ ମାମଲତକାର ଯେ ତାଙ୍କୁ ଦାଖଲ କରି ଛନ୍ତି କିମ୍ବା ମକଦମା ଲଗାଇଛନ୍ତି. ଆଜି କଚେରୀପାଖେ ଚଟିଘର ଭଡ଼ା ନେଇଛନ୍ତି, ସେଠି ସେ ଟେବଲରେ କାବାଦୋଇ ଅନାଇ ବସିଲେ। ଷୋହଳ ଶହ ପାଞ୍ଚଶ ଟଙ୍କା ପାଇଲି ବୋଲି ରସିଦ ଲେଖାଇ ଦସ୍ତଖତ କରି ସେ ପିଟିସନ ଦାଖଲ କରିଦେଲା। ହାକିମ ପ୍ରତିବାଦୀଙ୍କୁ ହୁକୁମ ଶୁଣାଇ ଦେଲେ "ତୁମକୁ ଖଲାସ କରି ଦିଆ ଗଲା।" ପ୍ରକାଶ ତାଙ୍କୁ ଛାଡ଼ିଦେଲେ। ଲୁହ ଛଳ ଛଳ କୃତଜ୍ଞତା-ପୂର୍ଣ୍ଣ ଦୃଷ୍ଟିରେ ସେ ତା'ର ମୁହଁକୁ ଚାହିଁଲା, ଯେପରି କି ଏଇଥର ଜୀବନରେ ତାକୁ କେଉଁଠି ଦେଖିଛି। କିନ୍ତୁ ଘରପର ମାଇପିଟି କୁ ଅଣ୍ଡେ ଚାଲିଗଲା। ସେ ତା ସ୍ୱାମୀଠୁଁ କେଉଁପର ସୁଆଗଆ କଥା ବି ଶୁଣିବାକୁ ଅପେକ୍ଷା କଲା ନାହିଁ, ଚାଲିଗଲା।

— ୦ —

# ନୀଳିମାର କବର

ନେକଟାର ନଣ ଅଛୁ । ମାଳମା ଦେଖୁଥାଏ ।
ବେଶ୍ ଠିଆ ଠିଆ ନଣ ଓ ବଡ଼ ଚେକା ମୁହଁ ।

ଛଡାଟିଏ ଧରି ସେ ବୁଲି ବୁଲି ଆସୁଛି । ନହଇ, ହାତକୁ ମୁଣ୍ଡ ଉପରେ ଛକି ମାରି ସେ ଠିଆ ହେଲଣି । ଏ ପାଖରୁ ସାଇକେଲ ଉପରେ ଫଣ୍ଡିଉଡ଼ା ଦେଇ ପିଲଟିଏ ଯାଉଛି ବୋଲି । ବାଁକୁ ଓ ହାର୍ନକୁ— ବାଁକୁ ଡାହାଣକୁ—ବାଜେ କି ନ ବାଜେ ।

ନା, ବାଜିଲା ନାହିଁ, ପିଲଟି ପାଞ୍ଚ ହାତ ଦୂରରେ ସାଇକଲ ବଙ୍କାଇ ନେଇ ପଳେଇଲଣି । ମୁକ୍ତି ପାଇଲା ପରି ଧଇଁ ସଇଁ ହୋଇ ସେ ଛୁଟିଛି । ଡୋରିଆ ହାଫ୍ ପ୍ୟାଣ୍ଟ ହୋଡ଼ ହୋଇ ଗୋଲ ଗୋଲ ପିଣ୍ଡ ଦୋ'ପାଳ ଧମକ ଲାଗିଛି ଫାଳେ ତଳକୁ ଫାଳେ ଉପରକୁ, ଫାଳେ ତଳକୁ ଫାଳେ ଉପରକୁ ଝିଂ ଝିଂ ଝିଣିଂ—ଛୁ ।

ପଥର ମୂର୍ତ୍ତି ସ୍ୱପ୍ନ ଉପରେ ଧୀରେ ଧୀରେ ବୁଲିଲା ଚରି ନେକଟା ପାହୁଣ୍ଡ ପକେଇଲାଣି । କେତେ ଓସାର ଛାତି । ଦେହରେ ଜୋର ଥିବ । ଖାଲି ଚେହେରା ଦାଉରେ ସେ ଜବତ୍ କରି ରଖିପାରିବ ମଣିଷକୁ ।

କିନ୍ତୁ କାହିଁକି ସେ ଏତେ ରୁଷ ଦିଶୁଛି ? ଝରକା ପାଖ ହେଲକୁ ଦିଶୁଛି, ତାର କପାଳ ତଳେ ଜକ ଜକ ଝାଳ । ରୁଢ଼

ବଢ଼ିଛି । ମା ଲୋ—କେତେ କଣ୍ଟାଳିଆ ରୁଢ଼—ଦେହ ଶୀତେଇ ଉଠୁଛି । ଦେହଟାକୁ ଆସ୍ତେ ଦୋହଲାଇ ଦେଇ ତାର ଆରସି ଆଡ଼କୁ ଅନେଇ ମାଳମା ହସିଦେଲା । ପୁଣି କାର୍ଯ୍ୟରେ ମନ ଦେଲା । ଦୁଇ ହାତରେ ଧଳା ସ୍ନୋ ଟିକିଏ ନେଇ ତାର ମାଂସଳ ଗାଲକୁ ଚଳକୁ ଟାଣି ମୁହଁ ବଙ୍କେଇ ଘଗଡ଼ିଲା ଘଗଡ଼ିଲା ।

ମାଳମା ପ୍ରସ୍ତୁତ ହେଉଛି । ଅଫିସ ଯିବାକୁ ପଡ଼ିବ । ସେ ଜଣେ ଶିକ୍ଷା ବିଭାଗରେ ବୁଲା ହାକିମ, ସହରରେ ଥିଲେ ଅଫିସ କରିବାକୁ ପଡ଼େ ।

ମସୃଣ କଳା ବସ୍ତ୍ରତ ଉପରେ ଧୀରେ ଧୀରେ ଧଳା କହର୍ ଧଳା କହର୍ ଫୁଟି ଉଠୁଲାଣି, ଦୁଇ ମାଂସଳ ବାହୁ ତାର ଆପଣା ମୁହଁକୁ ଜୋରରେ ଧରି ଘର୍ଷଣ ଚଳେଇଛି ବୁଲୁଛି ଇଞ୍ଜିନର ପିଷ୍ଟନ ପରି । ଆହୁରି ବାକି—ଆହୁରି ବାକି - ଦୋହରି ଚିବୁକ ସନ୍ଧିରେ, ଫୁଲ୍‌କା ଗାଲ କଡ଼ରେ । ଧୈର୍ଯ୍ୟ ଦରକାର । ତାର ଧୈର୍ଯ୍ୟ ଅଛି । ତିରିଶ ବର୍ଷର ଦେହ, ଓଜନ, ଘନ । ଅଥାନରେ ଚର୍ବି ବସିଛି ମୁଣ୍ଡା ମୁଣ୍ଡା, ଆକୃତିରେ ବସ୍ତୃତ । ବପୁସର ମାଂସଳ ଗାମ୍ଭୀର୍ଯ୍ୟ, ଚର୍ବିର ଲାବଣ୍ୟ, କୋମଳପଣ । ମାଳମା କଳା କିନ୍ତୁ ଆପଣା ବିବେଚନାରେ ଅସୁନ୍ଦରୀ ନୁହେଁ । ଏହି ତାର ଦୋଟି ଆଖି ହସି ହସି ଆଖି-ମିଟିକା ମାରୁଛି ତାକୁ । ବିଭିନ୍ନ କୋଣରୁ ହସର ପରିମାଣ କଳିବାକୁ ଗଲା ବେଳକୁ କେତେ ଧୋବ ଦିଶୁଛି ଦାନ୍ତ ଗୁଡ଼ିକ । ସାମାନାରେ ଲମ୍ବା । ଅଳ୍ପ ଫାଙ୍କ ।

ସିନେମାର ଗୋଟିଏ ଚରିତ୍ର ଭଙ୍ଗୀରେ ଯୋଡ଼ିଏ ତଳ ଦାନ୍ତରେ ତଳ ଓଠକୁ ଆସ୍ତେ ଚିପି ଧରି ସେ ସ୍ଥିର ହୋଇ ରହିଲା । ହସ ମାଡ଼ିଆସୁଛି ; କିନ୍ତୁ ମୁହଁଟି ଖୋଲୁନାହିଁ । ଦରଫୁଟା କଢ଼ ପରି । ସତେ ତ, କେତେ ଚଞ୍ଚଳ ଆପଣାର ଚିତ୍ତବୃତ୍ତିକୁ ପଡ଼ିଆରେ

ଚରିବାକୁ ଗ୍ରନ୍ଥ ଦେଇ ସେ ନିଷ୍ଠେନ୍ତ ହେଉ ନିମ୍ନପଥର ଆତ୍ମିକୁ ଗ୍ରହି ଗିବବାକୁ ପ୍ରୟାସ କରଥିଲା । ଗ୍ୟାନ ବା ହିଁକି ନେ ନିସ୍ଥା ଲୋକଟି, ନଅ ବର୍ଷର ପିଲା ସାଇକଲ ଚଡ଼ାଳି ଓ ସେ ନିଜେ —ଏ ତିନିଙ୍କୁ, ଏକାଠି । ପିଲାଟି—କେଡ଼େ ଅସ୍ଥିର ସତେ, ମାଳମାର ସମବୟସୀ ସଙ୍ଗୀ, ସୁରମାର ଠିକ ଏଡ଼କିଟିଏ ପିଲା, ଏମିତି କେଜାଣି । ମାଷ୍ଟ୍ର ଇଅରରୁ ପଡ଼ା ଗୁଡ଼ ତିଆ ହୋଇ ପାଞ୍ଚଟି ଛୁଆଙ୍କ ମା' ହୋଇ ସୁରମାଟା ହେଲଣି କେମିତି ବୁଡ଼ି ପରି । ହୁଁ—ହୁଁ—ହୁଁ —ମୁହଁ ବନ୍ଦ କରି ଅରସିକୁ ଗ୍ରହି ସେ ହସିଦେଲା । କାହିଁ ତାର ନିଜର ପରିବର୍ତ୍ତନ ! ଆଖିକୁ ଗ୍ରହି କପାଳକୁ ଗ୍ରହି ପ୍ରମାଣ ଖୋଜିଲା । ନିଜ ଦୃଷ୍ଟିରୁ ସେହିପରି ଅଛି ସେ । କିନ୍ତୁ ସେ ପିଲାଟି,—ଭାରି ଦୁଷ୍ଟ, ଭାରି ଦୁଷ୍ଟ । ସୁରମା କେମିତି ଆପଣା ହାତରେ ପିଲାଗୁଡ଼ିକୁ ଛାଂଟେଇ ଦିଏ । କିନ୍ତୁ ପିଲାଙ୍କୁ ଗେଲ କରିବାକୁ କେଡ଼େ ଭଲ ଲାଗେ । ପ୍ରଭୁ କହିଛନ୍ତି ସେମାନେ ନିଷ୍ପାପ । ନିଷ୍ପାପ ଶିଶୁ । ଧଳା ମେଣ୍ଢା । ମେଷପାଳକ । ଭୁଡ଼ା'ଇ ଭୁଡ଼ାଇ ମନେପଡ଼େ ସେହି ଝାଙ୍କୁଆ ନିଶୁଆ ଲୋକଟି । ଗୁମ୍ଫା—ମରଦ୍, କିନ୍ତୁ ଶୈଳୀ ନାହିଁ ।

ଧ୍ୟାତ୍ କେଡ଼େ ଅସମଞ୍ଜସ । କଣ ସେ ଭାବୁଛି ?

ପୁଣି ମାଳମା ହସିଲା । ପ୍ରସାଧନ ସରି ଆସିଲାଣି । ଡ୍ରୟର ଖୋଲି ଗୋଟି ଗୋଟି କରି ସବୁ ବନ୍ଦ କଲା, ବୋତଲ, ଡିବା, ସବୁ । ଏମାନେ ତାର ଦେହର ବିଭିନ୍ନ ଅଂଶର ରକ୍ଷକ, ଯେମିତି କହନ୍ତି ସବା ହୃଦୟକୁ ମୁରର, ମୁହଁକୁ ବ୍ରହ୍ମା, ଭୁକୁକୁ ଭଦ୍ରକାଳୀ ।

ତାର ଯୌବନର ସାଥୀ ଏମାନେ ବୋତଲ, ଡବା, ଅରସି ସବୁ ।

ପ୍ରସ୍ତୁତ ।

ମାଳମା ଡାକିଲା—'ମିଣ୍ଟୋ'—

'ହଁଃ'

'ଇଧୂଆଙ୍କୁ କହ ଗାଡ଼ି ଆଣନ୍ତୁ ।'

ପ୍ରସାଧନ ଶେଷରେ ଗାଡ଼ି ଆସିବା ପୂର୍ବରୁ ଏତିକ ସମୟ ଭିତରେ ବସି ବସି ଠିକ୍ ଏଇ ଚିନ୍ତା—ଆଜି କିଏ କଟି ଆସିବ ?

ଚଟିର ବହୁତ ଆସେ । ସରକାରୀ ଚଟି, ଭଜଣୀମାନଙ୍କ ଚଟି, ସହକର୍ମିଣୀ ଓ ବନ୍ଧୁମାନଙ୍କ ଚଟି । କିନ୍ତୁ ମିଳମା ସେଥିପାଇଁ ଝୁରେ ନାହିଁ, ଧାଇମା'ର ଲଫାପା ଖୋଲେ, ଥରେ ଆଖି ବୁଲେଇ ଦେଇ ଆଡ଼େଇ ଥୋଇଦିଏ ।

ସେଗୁଡାକ ପାଖିରେ ଗୋଟାଏ ଅରୁଚି ଆଣେ । ପାର୍ଶ୍ୱରୁ ମ ପକାଇ ମିଳମା ଧରେ ଦିନକର ସେସବୁ ବାଟର ଧୂଳିଆ ଶଗଡ଼-ଗୁଳା, ରାସ୍ତା ସରେ ନାହିଁ ।

କିନ୍ତୁ ସବୁଦିନେ ଏତିକବେଳେ, ଘରୁ ଗୋଡ଼ କାଢ଼ିବାକୁ ପ୍ରସ୍ତୁତ ହେଲା ଉତ୍ତାରୁ, ଗାଡ଼ି ଆସିବା ପୂର୍ବରୁ, ଠିକ୍ ଏହି ସାତ ମିନିଟ୍ ସେ ସେପରି କ ଅଭ୍ୟାସ ଅନୁସାରେ ଭାବିଯାଏ, ଆଜ କଣ ଚଟି ଆସିବ ନାହିଁ ?

ବାପା ମରିବାର ଦେଢ଼ବର୍ଷ ମୋଟେ ହୋଇଛି । ମନେଲଗା ବଡ଼ ବେଶ ଆଗ୍ରନଚୌକିଟା ପଡ଼ି ରହିଛି ବାଟ ମୁହଁରେ ତାର ପୁରୁଣା ଜାଗାରେ । ଆପଣା ହାତରେ ତିଆରି ମୋଟା ପିଙ୍କା ଖଣ୍ଡିକ ତାଙ୍କର ମୁହଁରେ ଖେଦିଦେଇ ଏତିକବେଳେ ସେ ପଚାରନ୍ତି—'ମିଳ, ବୁଲିଲୁ ? ଧାପଠୁଁ ଆଜ ଚଟି କିଛି ପାଇଥିଲୁ ?' ଭଜଣୀମାନେ ବୁଢ଼ୀଆଡ଼େ ଝେଲେଇ ହୋଇ ପଡ଼ି-ଲେଣି । ଖାଲି ସାହା ରହିଯାଇଛି ଏଇ ମିଣ୍ଡୋ । ଏକାଠି ଗୋଷ୍ଠି-ହୋଇ କୋରସ୍ ଧରନ୍ତି 'ଆଜ ଚଟି ଆସିବ ବାପା', ନିଶ୍ଚେ ନିଶ୍ଚେ ଦେଖିବ ଜାଇଁ । ମିଳମା'ବ, ଅଜ ଚଟି ଅଟିବ ।' 'ହଁଃ'

ସମ୍ପର୍କଟି ଜାତିଗତ ନୁହେଁ, ସଂସାରଗତ, ସ୍ଥାନୀୟ ଗାର୍ଲ୍ସ୍ ସ୍କୁଲରୁ ଆମଦାନି, ସେହିପରି ଡାକ । 'ହଁ, ମାଳମାଧ, ଆଜ ଚଟି ଆସିବ ସଂକେତରେ କହୁଛି ।'

'ଆରେ ଆରେ ଦେଖିବ ରଇଥା ତାଙ୍କ ସବୁ—ତା ସାଙ୍ଗରେ ଲଗେଇଛ କାହିଁକି?' ପିଲାର ଅଗଟା ଧକ୍କନ ଜଳି ଉଠେ, ସାମ୍ନା ପଖ ଚଢ଼ା କପାଳ ଉପରେ ଖେଳେ ଆଣର ଛେନା, ନେଳିଆ ଆଖି ମିଟି ମିଟି କରେ । କହନ୍ତି 'ଅରେ, ଭାଗ୍ୟରେ ଥିଲେ ପାପକୁମାର ତେବେ କୋଳା ମିଳେ ଆଜ ନଟକାଇଜର. ତୁମ ଭାଗ୍ୟରେ କଣ ଅଛି ତୁମେ କହି ପାରିବ?' ବାଟଭୁଲ ପ୍ରଜାପତି ସେ ଉଡ଼ି ଆସିଥିଲା, ସେହିଦିନୁ ରହିଛି । ସବୁ ପ୍ରଭୁଙ୍କ ଦୟା । ତାକୁ କଣ ପାଇବ ଅଭାବ ଥିଲେ, ନା ସାଙ୍ଗରେ ପଢ଼ି ନ ଥିଲେ ଆଜ କେଉଁଠି ତୁମ ମାଳମା'ଧ ନଡ଼ା? ନା, ତାର ଭଲେ କଥା ଅଛି । ମୁଁ ବି ନଟ'କା ଥିଲି ଦିନେ । ତୁମ ମାଙ୍କ ସଙ୍ଗେ ଯେତେବେଳେ ମୋର ଚିହ୍ନା ହୋଇଥିଲା—ହିଁ ହିଁ ସେ ହସନ୍ତି ।

ମାଙ୍କ ସଙ୍ଗେ ମାଳମାର କେବେ ଚିହ୍ନା ହୋଇନାହିଁ । ସେ ବର୍ଷକର ହେବା ପୂର୍ବରୁ ମା ଯାଇଥିଲେ । ଆଜ ଆଲ୍ମାରି ଲକଟା ଖୋଲି ପଡ଼ୁଛି ।

ଆଜ କେତେ ପରିବର୍ତ୍ତନ ନାହିଁ, ଖଟ, ଟେବୁଲ, ବହି, ଆଲମାରି, କାନ୍ଥଯାକ ଅଳନ୍ଧୁ ଲଗା ଫଟୋ ଚେଞ୍ଜା ମେଞ୍ଜା, ଘର କଣରେ ପୁରୁଣା କାଠ ବଗା ସନ୍ଧିରେ ବୁଢ଼ୀ ଆଣ୍ଡୀ ଜାଲ ।

ବାଟଭୁଲ ପ୍ରଜାପତି, ଯେଉଁ ତାଙ୍କର ସବୁ ଦିନର ଉପମା । କହନ୍ତି, 'ତାର ଆଦର୍ଶକୁ ଧନ୍ୟ କହିବ । ନଅ ବର୍ଷ ହେଲାଣି, ସେହିପରି ଅଟଳ ରହିଛି । ଏକା ଜିଦ, ଗାଉକାର

ଚିରସ୍ଥାୟୀ ସଂସ୍ଥାନ ନ କଲେ ସେ ଶାନ୍ତ ହେବେନାହିଁ । ପୁ'ର ଖାଇ ସେ ପୋଷି ହେବେନାହିଁ । ତାହାର ଧାରବ ନାହିଁ । ସମାଜର ଏଇପ୍ରକାର ଜୋର୍-ଜବରଦସ୍ତି ତାକୁ ହଲେଇ ପାରିନାହିଁ । ଏ ପରି କାହାକୁ ଦେଖିଛ ? ଦେଖିବ, ଏଥର ତ ନାମ ପାଇଲଣି, ସେତେବେଳେ ଆଉ ଚିଠିକୁ ଅପେକ୍ଷା ନ ଥିବ ।'

ସବୁ ସ୍ମୃତି ମନେ ମନେ ଅଛି । କେବଳ—ଘର ଖାଲି । ପାପକ କୁମାର ନେବାକୁ ଅସି ନାହିଁ, ରଖିବାକୁ ଆସି ନାହିଁ ।

ଆଉ କେତେ ଦିନ !

'ଏଇ, ମିଣ୍ଟୋ, ମିଣ୍ଟୋ' —

'ଯାଉଛି ଦାଦା—'

'ରଘୁଆ କାହିଁ ଗଲେ ?' ଦୂରରୁ ରନ୍ଧାଘରୁ ପାଟି ଶୁଭୁଛି— 'ଯାଉଛି – ଯାଉଛି ଦାଦା' ଟପ୍ ଟପ୍-ଝମ୍ ଝଣ୍ ଗାଡ଼ି ଆସିବା ଶବ୍ଦ ହେଉଛି । ମାଳମା ଝଟ୍ ବାହାରିପଡ଼ିଲା । ହେଇ ମିଣ୍ଟୋ, ଘରେ ଥିବୁ କୁଆଡ଼େ ମିବୁ ନାହିଁ, ଏଁ ଇଁ । ଷୋଳବର୍ଷର ମିଣ୍ଟୋ, ମାଳମା ଷୋଳବର୍ଷ ପାରହୋଇ କେରଣରେ ପଡ଼ିଅଛି । ମିଣ୍ଟୋର ବାହାର ବୁଲା ଶାସନ କରେ ।

'ଆଃ, ଏ କଣ କଲ ତୁମେ ରଘୁଆ, ଏତେ ଡେରି ?'

'ଟିକିଏ ମରାମତି କରିବାକୁ ପଡ଼ିଲା ଦାଦା, ଗାଡ଼ିଟା ବୁଢ଼ା ହେଲାଣି, ଘୋଡ଼ା ବୁଢ଼ା, ମୁଁ ବୁଢ଼ା, ସବୁ—କଚୁଆନର ଗାଡ଼ି ଉପରୁ ରଘୁଆ ଉତ୍ତର ଦେଲେ ।

'ଇସ୍ ରେ—ସବୁ ଖାଲି ବୁଢ଼ା ହେଇଗଲେ ?' ମାଳମା ହସିଲା । ଗୋଡ଼ ଚକା ଉପରେ ପାଦ ଥୋଇ ପିଲାଳିଆ ଭଙ୍ଗୀରେ ଗୋଳ ମୁହଁ କରି ଉପରକୁ ମୁହଁ ଟେକିଲା । କହିଲା—'ଆଉ

ମୁଁ ୯' ବୁଢ଼ା ଘୋଡ଼ା ଆଡ଼କୁ ପାଦ ବଢ଼ାଇଲେ । ରଘୁଆ କହିଲେ 'ଚୂଃ-ଚୂ ଃଚଃ ।'

ମାଳମା ହସିଲା ।

ପୁଣି ନଡ ଦଅର ମଡ଼ା ବାଟ, ସେଇ ଗଳି, ସେ ରାସ୍ତା, ଦୁଇପାଖର ସେଇ ଘର, ସବୁ ।

ଧକଡ଼-ଚକଡ଼ ପୁରୁଣା ଗାଡ଼ିରେ ଦିନକୁ ଦୁଇ ଥର ଯିବା-ଆସିବା ମାଳମାର ନିୟମିତ ବ୍ୟାୟାମ । ତେବେ ବି କିଛି କମ୍ ନୁହେଁ । ତା'ପଛ ଆସନ ସଙ୍ଗେ ସଂଘର୍ଷ ଲାଗି ଲାଗି ଦେହରେ ଅନୁଭୂତ ପ୍ରାଚୁର୍ଯ୍ୟ ଘେଟେ । ପୋଷାକରେ କୁଞ୍ଚର ଭାଙ୍ଗ ଓ ଟିପା ଟୋପାମାନ ଯେତେ ଅସ୍ତବ୍ୟସ୍ତ ହୁଏ, ସ୍ନେହବାନ୍ ଚେକ ଚେକ୍ ମନ୍ତ୍ରେର ହୁଏ । ପୁଣି ବଟୁଆ ପରି ଛୋଟ ଚମଡ଼ା ମୁଣିରୁ ଟଙ୍କା ପଇ ଷତ୍ରୁ ଅର୍ଦ୍ଧିଟି ବାହାର କରି ଦେଖିଲାବେଳକୁ ଦୁର୍ନିବାର ଧୂଷ୍ଟତା ମାତ ପରି ସାରା ମୁହଁର ପ୍ରସାଧନ ଲୁହରେ ଓଦା ହୋଇ ଆସି ସ୍ଥାନେ ସ୍ଥାନେ ମେଞ୍ଚା ମେଞ୍ଚା ହୋଇ ଯାଇଥାଏ । ବାଟରେ ଠିକ ଠାକେ ମହାନନ୍ଦ୍ ପାଣି ମାଳମା ଗାଡ଼ିରୁ ଓହ୍ଲାଏ ।

ଗାଡ଼ି ଚାଲିଥାଏ । ମାଳମା ଭାବୁଥାଏ ସେ ଦିନକା କଥା । ସେ ଅନ୍ଧାର, ବର୍ଷର ମାସ ତା'ପରେଇ ରହି ହୁଏ ନାହିଁ । ସବୁ ଖାଲି ପଡ଼ା, କାଲି ରାତିର ବାସି ଆଜିକା ସକାଳ । ଆଶା ମେଣ୍ଟି ନାହିଁ, ରାଜକୁମାର ଆସି ନାହିଁ, ଗଣ୍ଠି ପଡ଼ିନାହିଁ । ସେ ମହିଷ ହୋଇ ବଞ୍ଚିଛି, କାଠ ହୋଇ ନାହିଁ । ନୂଆ ନୂଆ କେତେ ଥର ଏଇ ଗାଡ଼ିରେ ସେ ଓ ରାଜକୁମାର ଯାଇଛନ୍ତି । ଜହ୍ନ ରାତିରେ । ଜାଣ୍ଟିଆ ନକ୍ଷତ୍ର, ଅନ୍ଧାର ରାତିରେ ବାଇସ୍କୋପ୍ । ବୁଢ଼ା ରଘୁଆ ତାର ସାକ୍ଷୀ । ରଘୁଆ ବୁଝିପାରେ ।

ସବୁବେଳେ ମୁଠ ହାତ ଯେଉଁ ବାପା, ବାଡ଼ର ଫଳ ଫଳିବା ନିଜେ କିଣନ୍ତି ବଜାରୁ ମଧ୍ୟ, ଅଫିସ ନ ଯିବା ବେଳେ ଗାଡ଼ିଟା ଭଡ଼ା ଲାଗିଲେ ବି ରାଜକୁମାର ସଙ୍ଗେ ବୁଲି ଯିବାକୁ ସେ ଗାଡ଼ିଟା ମାଗଣା ଦିଅନ୍ତି, ମନରେ କଳ୍ପନା କରନ୍ତି ନାହିଁ ଏତେ ଟିକିଏ ।

ଭଉଣୀମାନେ,—ସବୁବେଳେ ବୁଲି ଯିବାକୁ ଯେଉଁମାନେ ଫରଫର, ସେମାନେ ବି ଏ ଗାଡ଼ିରେ ଭାଗ ନେବାକୁ ଆସନ୍ତି ନାହିଁ ଯେତେବେଳେ, କାହାର ମୁଣ୍ଡ ବିନ୍ଧେ, କାହାର ପିଲେଇ ମନେ ପଡ଼େ, କାହାର କାଳିକା ପଡ଼ା । ରାଜକୁମାର ଗାଡ଼ିରେ ବସେ ।

ଦୁନିଆ ଠିକ୍ ସେଇଆ ଚାହିଁଥିଲା ।

ଆଉରି କେତେବେଳେ କିଏ ଏ ଗାଡ଼ିରେ ବସି ପଡ଼ନ୍ତି, ରେସ୍ ଲସ୍ତ । ବାଟର କଳାରି ବି ସ୍ୱର ଅଡ଼କୁ ଚାହିଁ ଧୋଇ ଗାଡ଼ି ପଛଆଡ଼େ ଠିଆ ହୋଇ ଚାଲି ଯାଆନ୍ତି ଖଣ୍ଡେ ଦୂର । କିନ୍ତୁ ଅନ୍ୟମାନଙ୍କ ସଙ୍ଗେ ସମ୍ପର୍କ ଓ ରାଜକୁମାର ସଙ୍ଗେ ସମ୍ପର୍କ ଭିତରେ ତଫାତ୍ ଅଛି । ସେମାନେ ସୁବିଧାବାଦୀ, ମଝି ବାଟର ବାଟୋଇ, ଦଣ୍ଡିକର ସାଥି । ଖାଲି ସେଇ ଘଣ୍ଟକ । ସେ ସେ ଧ୍ରୁବ, ଅଟଳ ପ୍ରତିଜ୍ଞ । ହୃଦୟ ଭିତରେ ଖଣ୍ଡିଏ ଜାଗା ଅଛି ତାହା ପାଇଁ,— ଚିରସ୍ଥାୟୀ ହୋଇ ଛଅ ବର୍ଷ ହେଲା ତାହାର ରୂପ ସେଠି ଜଳି ଲାଗିଛି । ଯା, ଆସ,— ଦିଆ ନିଆ,—ଚିଠି ପତ୍ର—ଏହିପରି ବର୍ଷକୁ ବର୍ଷ । କିନ୍ତୁ ଯେତେବେଳେ ଦେଖିଲେ ହେଁ ଚକ୍ରଧର ଘଡ଼ିଟା ଖଣ୍ଡେ ଦୂର ଆଗରେ । ସୁବିଧା ହେଉ ନାହିଁ, ଦୁଇ ପକ୍ଷର ଖାଲି ତପସ୍ୟା ।

ଚାହିଁ ଚାହିଁ କେତେ ବାଟ କଟିଗଲାଣି ।

ଜେଲଖାନା ଜା'ନ୍ତୁ ପାଖେ କଏ ଯେ ଗୁଳୁଛି ? ସେଇଛ ଲୋକଟା ନା ?

ଛଡ଼ା ଧରି ଧୀରେ ଧୀରେ ସେ ଆସନ୍ତି, ଯାହାର ପ୍ରକାଣ୍ଡ ଚେହେରା, ଠିଆ ନାକ, ବଳିଷ୍ଠ ଗଢ଼ଣ ଗୁମ୍ଫା ମରଦ୍ । ତାର ଯାତ୍ରାକୁମାର ମେହ୍ନପରି ଅଡୋ ନୁହେଁ, କେମିତି ଏକ ହଜାର ସ୍ତ୍ରୀ ଓ ପୁରୁଷ ମିଶାମିଶି । ସ୍ତ୍ରୀ ପରି ଚାଲିଚଳ କଞ୍ଚାଁଳ, ଦେହର ଅବଲମ୍ବରେ ସ୍ତ୍ରୀ ପଣର ଢାଞ୍ଚା, କିନ୍ତୁ ପୁରୁଷ ପରି ଢେଙ୍ଗା । ତାର ସ୍ୱରଟି କର୍କଶ, ଦର୍ପମୟ, ପୁରୁଷ ପରି ତାର ଆଦର୍ଶ ନଷ୍ଟ । ସେ ବାଁ ପାଖେ ଠେର କାଟେ, କିନ୍ତୁ ଲମ୍ବ ବାଳ ରଖେ – ବାମ୍ବୁ-ତେଲରେ ଜଡ଼ି ବୁଲ୍ । ନାନା ଜାତି ପ୍ରସାଧନ ଦ୍ରବ୍ୟ ସାହାଯ୍ୟରେ ତାର ଚିକ୍କଣ ମୁହଁର ଚମଡ଼ା ଯେ କୌଣସି ସ୍ତ୍ରୀ ମୁହଁଠୁ ପାଲିସ୍ କିନ୍ତୁ ମୁହଁର ଗଢ଼ଣ ଲମ୍ବା, ହିଲଏ ହାଡ଼ ଓ ଗାଡ଼, ଭାବନାଗ୍ରସ୍ତ ପୁରୁଷର ମୁହଁ । ପହିଲି ଦେଖା ସେଦିନ । ଥାର୍ଡଇଅର,— ଦୁହେଁ ସାହିତ୍ୟ ଗ୍ରୁପ । ଲମ୍ବା ପଞ୍ଜାବୀ ଉପରେ ଫୁଲ୍‌ଗକା ଝଣ୍ଡିଆ ପରି କଣ ଗୋଟିଏ ଓହଳାଇ ଦେଇଥାଏ, ଅଣ୍ଟା ହଲେଇ ହଲେଇ ନୃତ୍ୟରେ ପାଦ ପକାଇ କ୍ଲାସରେ ପଶିଲ, ହାତଯୋଡ଼ି ପ୍ରାଚ୍ୟ ଶିଳ୍ପର ଲଳାୟିତ ଭଙ୍ଗୀରେ କହିଲା 'ନମସ୍କାର ।'

ସେଇଛି ତାର ଆଗମନର ଧ୍ୱନି । କରୁଣ ଆଖିର ମିନତିରେ ତାର ଅଭିଯାନ । ଭାବପ୍ରବଣ ଢଳ ଢଳ ଆଖି । ମାଳମା ଉଣ୍ଡିଯୁ ଦେଉଥିଲି । ତା ପରେ କେଉଁ ଛଟକରେ ଘରକୁ ଆସି ସେ ବାପାଙ୍କର ବାଧ୍ୟ ଶ୍ରୋତା ହୋଇ ତାଙ୍କ ମନ ଜିଣିଥିଲା । ଭଉଣୀ-ମାନଙ୍କୁ ପାଠ ପଢ଼ାରେ ଓ ବଜାର ଫର୍ମାସିରେ ସାହାଯ୍ୟ କରି ତାଙ୍କର ବନ୍ଧୁତା ଅର୍ଜିଥିଲା । କୁକୁରକୁ ବି ଗେଲ କରିଥିଲା,

ସେପରିକି ପରପାଇଁ ଆଗ୍ରହୀଙ୍କୁ ନରମ ଓ ତରଳ ଆ କରିବାରେ ହିଁ ତାର ଆନନ୍ଦ । ବନ୍ଧୁତା ବଢ଼ିଥିଲା, ମା ନାହାନ୍ତି; ବାପା କହିଲେ, 'ଏ ବେଶ୍ ହେବ ।'

କେଳୁ କ ଅଦ୍ଭୁତ ଖିଆଲ ତାର ! ବ୍ଲାଉସ୍ ଦେଖିଲେ ଛଡ଼ାଇ ନେଇ ପିନ୍ଧି ପକାଏ, ପାଳଟା ଶାଢ଼ୀ ପିନ୍ଧି ଦେଖାଇ ହେବାକୁ ଅଳି କରେ । ଥାର୍ଡ ଇଅର, ଇତିହାସ-ସାହିତ୍ୟ, ସମସ୍ତ ମିଳେ ।

ଚହିତ ଚନାମାଟିର ବାସନ ପରି, ସବୁବେଳେ ଚକ୍ ଚକ୍ ।

ମାଳମା ଦୀପକୁମାରଙ୍କୁ କବି କରିଥିଲା, ମୁକ୍ତିକୁ ବାଚାଳ କରିଥିଲା ।

ପହିଲି ଭଲ ପାଇବାର ଆରମ୍ଭରେ ଓ ଶେଷରେ ଥରେ ଅବଧି କବି ହୁଅନ୍ତି ସମସ୍ତେ, କିନ୍ତୁ ଦୀପକୁମାର ରହିଗଲା । ଗୁମ୍ଫି ନଟେଲି କବିତାର ହାର ମାଳମାର ଗଳାରେ, ଚଳୁଛି ମଲ୍ଟିନୁ ଚତୁର ତାର ବିନ୍ୟାସର ଭାବ । ମାଳମାଙ୍କ ତାର ଉଗଳ୍ଭ ଇଙ୍ଗିତ ବୁଝିପାରେ । ଥାର୍ଡ ଇଅର, ଫୋର୍ଥ ଇଅର,—ଏକ୍ସାଇଜ୍ ଖାତାରେ, ବହି ମଲାଟରେ, ଫୁଟି ଫୁଟି ଉଠିଲା ନେଳ କୁସୁମ ପରି କାବ୍ୟର କଳିକା, ଏପରି ଅଧେ ବ୍ଲାକ୍‌ବୋର୍ଡରେ ବି ସେ ଦେଖା ଦେଲା । ପ୍ରତିଦ୍ୱନ୍ଦ୍ୱିତା କରିବାକୁ ବସି ଦୁଇ ତିନି ଜଣ ସହପାଠୀ କୋଳିମାନା ଦେଲେ । ଦୀପକୁମାର କର୍ତ୍ତୃପକ୍ଷଙ୍କ ପ୍ରିୟ, ବାଧ୍ୟ, ବିନୀତ ।

କ୍ଲାସର ଶାସନ କାର୍ଯ୍ୟରେ ଦୀପକୁମାରଙ୍କ କର୍ତ୍ତୃପକ୍ଷଙ୍କ ଗ୍ରହଣ । ସେ ଦିନର ସ୍ମୃତି ସଞ୍ଚରଣି ଫୁଟି ଉଠିଲା ଦୀପକୁମାରର ସାହିତ୍ୟ, ସାନ ସାନ କବିତା ସଂଗ୍ରହ,—'ମାଳ-ଦୀପିକା' 'ଦୀପ-ମାଳିକା' । ଏହିପରି କେତେ ।

ଫୋର୍ଥ୍ ଇଅରରେ ଦୁହେଁ ଫେଲ୍ ହେଲେ ।

ପାସ୍ କଲା ପରେ ପୁଣି ଏମ୍. ଏ. ରେ ଭର୍ତ୍ତି, ଏକାଠି । ଫେର୍ ଉଠିଲେ, ତା ପରେ ଭାଗ୍ୟର କେତେ ବିପର୍ଯ୍ୟୟ ପରେ ଦୀପକୁମାର ହେଲା ପ୍ରାଇଭେଟ୍ କଲେଜର ଅଧ୍ୟାପକ, ଠିକା କାମ, ଚିରସ୍ଥାୟୀ ହେବାକୁ ଆଶା । ମଳିମା ନାରୀତ୍ୱର ଗୌରବ ଦେଇ ନୂତନ ଜ୍ଞାନ ଅର୍ଜନ ହେଲା ତାହାର ।

କିନ୍ତୁ ଦୀପକୁମାର ଲେଖକ ହୋଇ ଉଠିଗଲା, ମଳିମାକୁ ବର୍ଣ୍ଣନା କରିବାକୁ ଗୁଣବର୍ଣ୍ଣ କରିଥିଲେ ପରେ ଗୋଟାଏ ବହି ଲେଖିବା ହେଲା ତାର ଅଭ୍ୟାସ । ଅନେକ କଥା ଲେଖିଲା,— କେଉଁ ଦୂର ଅତୀତର ଗଦ୍ୟ ଅନୁଭୂତିର କଥା, ବର୍ତ୍ତମାନର ଗୋପନ କଥା,— ଯାହା ତାର ଓ ମଳିମାର ଯୌଥ ଅନୁଭୂତିର କାହାଣୀ ନୁହେଁ । ଦୁହେଁ ଦୁଇ ଦୂର ସହରରେ । ମଳିମା ଉପେକ୍ଷା କରିଛି ଦୀପକୁମାର ଆସି କହିବ 'ସବୁ ପ୍ରସ୍ତୁତ, ଭଗବାନଙ୍କୁ ଧନ୍ୟବାଦ । ସବୁ ପ୍ରସ୍ତୁତ, ଏହି ବୈଶାଖରେ—'

ଗାଡ଼ି ଛୁଟିଲା ହେଲାଣି । ନିତିଦିନର ଏତକ ବେଳର ସ୍ୱପ୍ନରୁ ମୁଣ୍ଡଟେକି ମଳିମା ଚମକିଲା ବଡ଼ଆ ଖୋଲି ଚଞ୍ଚଳ ଚଞ୍ଚଳ ପ୍ରସ୍ତୁତ ହେଲା । ଟିକି ଦର୍ପଣକୁ ଦେଖି ଅଭ୍ୟସ୍ତ ହାତରେ ସାମାନ୍ୟ ଟିକିଏ ଯତ୍ନ, ତିନି ପରେ ସବୁ ଦିନର ଅଫିସ-ଯିବା ମୂର୍ତ୍ତି ତିଆରି ହେଲା । ଗମ୍ଭୀର, ନୀରବ । ୧୦ ବଡ଼ାକ ଭିତରକୁ ଟାଣି ଧରି ୧୦ ସ୍ଥାନରେ ଗୋଟିଏ ସରୁଗାର । ସେ ସୌହାର୍ଦ୍ଦ୍ୟ ଖୋଜେ ନାହିଁ, ସାମାଜିକ ଗପ ପସନ୍ଦ କରେ ନାହିଁ । କର୍ତ୍ତବ୍ୟରେ କଠୋର, ସୁନିପୁଣ କଳ । ହାତ ବ୍ୟାଗ ଧରି ମାପିଲା ପରି ପାହୁଣ୍ଡ ପକାଇ ବ୍ଲକ ଛାଡ଼ି ମିସ୍— , ଅଫିସର କର୍ତ୍ତ୍ରୀ । ସତର ବର୍ଷର ଦୁଇଟି

ଯୁବତୀ କର୍ମଚାରୀ ଏକାଠି ଠିଆହୋଇ କଣ ଉତ୍ତମୀ ଉଦ୍ଦାମ୍ଯୁ କରି ହସାହସି ହେଉଥିଲେ । ଆଗୁଛନ୍ତି ଚରଣ, ମେଘ ପରି ମୁଣ୍ଡ, ଅଣ୍ଟ ଧୋବ ଶାଢ଼ୀ, ଜକ୍ ଜକ୍ ଯୋଚା, ସେଠି ମମତା ନାହିଁ । ସେହି ଯୋଦ୍ଧା ମୂର୍ତ୍ତିକୁ ଦେଖି ଦୁହିଙ୍କର ହସ ଉଡ଼ିଗଲା ଯାଇ ମୁହଁ କଳାକାଠ ପଡ଼ିଗଲା । ମାଳମା ମୁହଁ ନ ଟେକ ଅଟକିଯାଇ କହିଲେ, 'ଏ କଣ ଦେଖୁଛୁ ? ଏ କଣ ଅଫିସ ନା ଆଉ କଛି ?' ବାଟେ ବାଟେ ଆପଣା କୋଠରୀକୁ, ଝିଂ ଝିଂ କରି କଲିଂବେଲ୍ ବାଜି ଉଠିଲା, ବୁଢା ଚପରାସି ଉର୍ଦ୍ଦି କସି ଦେଇ ପିଣ୍ଡାରେ କଉପଟିଆ ହୋଇ ଶୋଇ ଶୋଇ ପାଟିବାଟେ ପବନ ଛାଡୁଥିଲା । ଗୋଟିକଆ ହଳଦିଆ ଦାନ୍ତଟି ଦିଶୁଥିଲା, ମୋଚକ ଉଡୁଥିଲେ, ସେହି କର୍କଶ ଘଣ୍ଟୀ ଝିଂ ଝିଂ ଶୁଣି ଧଡ଼ପଡ଼ ହୋଇ ଉଠିପଡ଼ ପାଟିକଲା "ଜୁଉ" ଧାଇଁ ଯାଇଁ ସାମ୍ନାରେ ଠିଆହୋଇ ସଲାମ ହେଲା ଚପରାସି । କର୍ମଚାରୀମାନେ ଆସିଲେ । ଦିନକର କାମ ଆରମ୍ଭ ହେଲା ।

"ଓଃ, ବିରକ୍ତ କଲେ ଆପଣ, ଟାଲି ଦସ୍ତଖତ୍ ଦସ୍ତଖତ୍ ।"

ହାତରେ ବନ୍ଧା ହୋଇଥିବା ସାନ ଘଣ୍ଟାର ବେଳ ଦେଖି-ନେଲେ, କହିଲେ 'ଆଉ କେତେ ?'

'ଏଇ, ଦିଟା ବାକି ।'

'ସରିଲା ତ ?'

'ଏଇ ଚିଠିଟା ଆଜ୍ଞା, ବଡ଼ ଜରୁରି, ସବୁ କରି ରଖିଛି, ଆପଣ ଟିକିଏ ଦେଖିଦେଲେ—'

"ଓଃ, କଣ କହନ୍ତୁ ।"

'ବାଳିକା ସ୍କୁଲର ଘଟଣା ଆଜ୍ଞା,– ସେ ଲେଖିଛନ୍ତି ପାଣି ଗଳୁଚି, ପିଲାମାନେ ବସି ପାରୁ ନାହାନ୍ତି, ନବପଦ ନୁହେଁ, ପଡ଼ କଛି ଦୁର୍ଘଟଣା ଘଟିବ—'

ବୃଦ୍ଧା କର୍ମଚାରୀ ଅତି ଆଗ୍ରହରେ ତାଙ୍କର ଚଷମା ଲଗା ଆଖି ଦୋଟି ଟେକ ଧରିଛନ୍ତି । ପ୍ରଚୁର ଉତ୍ସାହରେ ମୁହଁ ଭିତରେ ପାନବୋଳା ଲାଳ୍ ଜଭିଟି ଏକଢ ସେକଢ ହେଉଛି । ଚପରାସୀ ଅପେକ୍ଷା କରୁଛି, ପଦେ କହିଦେଲେ ପିଁ କରା ଦୌଡ଼ିଯିବ । ଗମ୍ଭୀର ହୋଇ ମାଳମା କହିଲା—'ତାପରେ ?

"ସେହି ଦରଖାସ୍ତ ଅନୁଯାୟୀ ଯାଞ୍ଚ କରିବାକୁ ଯାହାଙ୍କୁ ଦିଆଯାଇଥିଲା, ସେ ମହାଶୟଙ୍କ ରିପୋର୍ଟ 'କ' ଚିହ୍ନିତ କାଗଜ ପତାକା ତଳେ ଅଛି । ଗ୍ରାଣ୍ଟ୍ ଶେଷ ହେବା ଉପରେ । ସ୍ଥିତରୁ ପାଣି ଦେଉଛି—"

କଥା ମଝିରେ କଲିଂ ବେଲର ମୁଣ୍ଡ ଉପରେ ଠାଇ କରି ଏକ ଚଟକଣା ।

'ହଜୁର୍—'

'ହେଇ, କାନ୍ଥକୁ ଦେଖ । କେତେ ବାଜଲଣି ! ଡାକ କାହିଁ ? ଡାକ ଆଣିଯିବା କାହା କର୍ତ୍ତବ୍ୟ ? କେ ଶୁଣେ ?

ବୃଦ୍ଧା କର୍ମଚାରୀ ଚମକପଡ଼ ଜୋର୍‌ରେ ହାତ ହଲାଇ ଦୁଆର ମୁହଁ ଅଡ଼କୁ ଚପରାସୀକୁ ଇଙ୍ଗିତ କଲେ ବାରମ୍ବାର । ପିଁ କରି ଉଡ଼ନେ ବୃଦ୍ଧା ଚପରାସୀ । କର୍ତ୍ତବ୍ୟର ଧାରଣାରେ ଗୁରୁ ଗମ୍ଭୀର ହୋଇ ।

'ଏଇ ଦେଖନ୍ତୁ ହିସାବ ପତ୍ର । ଗତବର୍ଷ ତଳେ ଏ ସମ୍ପର୍କରେ ଯାହା ଲେଖାପଢ଼ି ହୋଇଥିଲା 'ଗ' କାଗଜ ପତାକା ଚିହ୍ନ ତଳେ ତାର ସଂକ୍ଷିପ୍ତ ସାର ଅଛି । ସିମେଣ୍ଟ ଇଟା...'

ମାଳମା ଆଉ ଶୁଣି ପାରୁନାହିଁ । ଦ୍ୱିଗୁଣ ଉତ୍ସାହରେ ପ୍ରବୀଣ କର୍ମଚାରୀ ହାତ ହଲାଇ ବକ ଲଗିଛନ୍ତି । କଣ ଖସ୍ ଖସ୍—ଚପରାସୀ ଆସିଲା କି ? ମନ ଭିତରେ ଥରେ,—ବାହାର ଦୁନଆଁରୁ ଉଡ଼ଆସି

ଥିବା ଲୁଣ୍ଡା ପୁସ୍ତା । ଉଃ - ବୁଡ଼ା – ବୁଡ଼ା । ବୁଡ଼ା କଳ ଭିତରେ ଦାବି ହୋଇ ମାଡ଼ି ହୋଇ ପ୍ରାଣଟା ଛଟପଟ ହେଉଛି । ଖାଲି କଳରବ,– କଳରବ, କଳର ଶବ୍ଦରେ ପ୍ରାଣର ସ୍ପନ୍ଦନ ବୁଡ଼ିଛି । ଭୁଲି ହୋଇଛି ସବୁ । ମୌସୁମର ଅଧ୍ୟାପନା ବକ୍ତୃତା କରୁଥିଲା । କେତେ ଯୁଗ ଆଉ ? ସେଇ କଣ ସେମିତି ଖଣ୍ଡେ ଚିଠି,– ସେ ମାନଙ୍କ ଯୁଦ୍ଧ ଗୋଟାକ ପରେ ଗୋଟାଏ ଜିତି ଜବାହର ଦଳ ସେ ପାର୍ଶ୍ୱ କରିପାରିଲେ—ଯୁଦ୍ଧର ଚିରସ୍ଥାୟୀ ହେବା ଆଶା ଦେଖିଲଣି, ଗୋଟାଏ ଚିରସ୍ଥାୟୀ ବନ୍ଦୋବସ୍ତ ହେଲମାନେ ଜବାହର ତାରିଖ ଠିକଣା ହେବ । ଚିରସ୍ଥାୟୀ ବନ୍ଦୋବସ୍ତ—କେବେ ହେବ ? ପୁଣି ମୂଳରୁ ଅ'ଆ ଠୁଁ ସବୁ ଗ୍ରାବର ଏ -

'ଦେଖିଲେ ନା, ସବୁ କଥା ଅଛି । ମୋର ତର୍ଜମା ଠିକ୍ ହୋଇଛି ନା ଅଜ୍ଞା ? ଏଇଥା ତ ଲେଖିଦେବା, ନା କଣ ? ଓ—'

ଜର୍ମିଲ୍ମ ଦୂଆଗଲେ, ଚିଠି ଆସିଲଣି । ପଢ଼େଇ ଯାଉଥିବା ତାଙ୍କର ମୂର୍ତ୍ତିକୁ ଉଦ୍ଦେଶ୍ୟ କରି ମାଳମା କହିଲ,—ପଢ଼ ।

ଦୁହେଁ ଚାଲିଗଲେ । ନାସି ହାକିମଙ୍କ କଟିରେ କାମ କରିବା ତାଙ୍କର ଅଭ୍ୟାସ ହୋଇଯାଇଛି । ଅଲିଗୁଣ ପାଆନ୍ତି ନାହିଁ । ଜାଣନ୍ତି, ମୂଳ ଭ୍ରିକେ ଖବର ହେବ ।

ଚାପରେ, ମାଳମା । ଘରେ ସେ ଏକୁଟିଆ ।

ସମ୍ମୁଖରେ ଦଳଯାଜର ଚିଠି ।

ଦୀର୍ଘଶ୍ୱାସ ପକେଇ ଆଖି ବୁଜିଦେଲା,— ଖାଲି ପରକାଶ ଚିଠି, ନିଜ ପାଇଁ କହୁ ନାହିଁ । କହୁ ନାହିଁ ? ଚିଠି-ଅଳିଆ ମଝିରେ ପଶି ହେଇ ତ' ଖଣ୍ଡେ ନିଜ ନାଁରେ ଚିଠି । ସବୁଜ ଲଫାପା, ନାଲି ଶଙ୍ଖର ଚିହ୍ନ, ପ୍ରଜାପତି ଉଡ଼ିଯାଉଛନ୍ତି, ହୁଏତ ବିବାହ । ନାଲି ଅକ୍ଷରରେ ଟଣ୍ଡା ଅକ୍ଷରରେ ପରିଷ୍କାର ଗୋଲ ଗୋଲ ହୋଇ

ତାର ନିଜ ନାଁ ଠିକଣା । ବିବାହ ନିମନ୍ତ୍ରଣ । ଫେର୍ କିଏ ସେ ? ମାଳମା ହସିଲା । ସାଙ୍ଗରେ ପଢ଼ିଲା ଝିଅ ପୁଅ ଆଜି କେଉଁ ବନ୍ଧା ନାହାନ୍ତି, ପଛ ଦଳର କେତେ ମଣ୍ଟ ଗଲେଣି । ଏମିତି ସୁନ୍ଦର ସୁନ୍ଦର ଲଫାଫା, କୁଆଡ଼ୁ ଉଡ଼ିଆସି ପ୍ରବେଶ କରିଯାଏ ସେମାନଙ୍କର ନୂଆ ଜୀବନର ଇସ୍ତାହାର ଖାଲି ପାହାରେ ଦିଏ, ବସ୍ତୁସର ଚଳନ୍ତି କଣ୍ଟା ଆଖି ଆଗେ ଲଖି ରହେ ତା ନିଜ ଉପରେ ।

ଲଫାପାଟିକୁ ଟେକି ଧରି କୌତୁକରେ ଖୋଲା କରି ଦେଖିଲା ବେଳକୁ ଅଜାଣତରେ ଖସିଗଲା ଗୋଟାଏ ଦୀର୍ଘଶ୍ୱାସ । ଦୀପକୁମାର, ଦୀପକୁମାର,—କାହିଁକି ବୃଥା ଏ ଆତ୍ମସମ୍ମାନର ଅହଂକାର, ଅଭାବର ଛଳନା,—ଯୌବନର ନ୍ୟାଯ୍ୟ ଦାବୀ ପ୍ରତି । ଆଜି ସେ ଠାଣ କରି ଟେଣ୍ଡ୍ରେ ଚିଠି ଲେଖିଦେବ, ବନ୍ଧୁହନୁଁ ଆସିନାହିଁ, ସ୍ୱୀକାର ତ ହେଲଣି ଏଥର ତୁମେ ବରଂ ବଜନ୍ତ କର ମୁଁ ଘର ଓଲେଇବି ଘର ସାଇତିବି, ଲଜ୍ଜା ନାହିଁ । ସେହି ଲଫାପାକୁ ହାତରେ ଧରି ଅନ୍ୟମନସ୍କ ହୋଇ ମୁଣ୍ଡ ଝୁଲେଇ ରଖି ଭାବିଲା ବେଳକୁ ତର ତର ହୋଇ ସାତ ପାଞ୍ଚ ବର୍ଷର ଖସିଗଲା । ଦୀପକୁମାରକୁ ମଙ୍ଗୁଥିଲା ବୋଲି ମନେ ମନେ ଧରିନେଇ ତୁନି ହୋଇ ବସିପଡ଼ିବା କଣ ତାର ଉଚିତ ହୋଇଛି ? ସୌଖିନ୍ କବି ଦୀପକୁମାର, ଛଳ ଛଳ ଆଖି କଅଁଳ ନରମ ଦୀପକୁମାର, ସେ ଠାଣ ହୋଇପାରିବ ନାହିଁ । ବାସ୍ତବତାର ହତାଶୀ ରୂପ ଦେଖି ବେଳ ଗଡ଼େଇ ଗଡ଼େଇ ଖାଲି ନେଉଥିବ ମହଲତ । ସୁକୁମାର କବି, ସରଳ ଅଧ୍ୟାପକ, ନିରୀହ ମଣିଷଟି,—ଖାଲି ମନେ ମନେ ଆଶାକରୁଥିବ,—ଜୀବନର ବାଟ ସରଳ ସହଜ ହୁଅନ୍ତା କି ? ସମସ୍ୟାର ହେତୁ ଯେଉଁମାନେ, ସେମାନେ ମରି ହଜି ନାଟ୍ୟ ପ୍ରାଙ୍ଗଣକୁ ଖାଲି କରି ଦେଇଯାଆନ୍ତେ, ଜୀବନର ସବୁ ଆବଶ୍ୟକ

ଜପଜରଣ ଗଛରୁ ଝୁଲୁଥାନ୍ତା, ଇଡ଼େନ୍ ଉଦ୍ୟାନ ପରି; ସେହି ନେଳ ଆଲୁଅରେ ସଂସାର ସୁନ୍ଦର ଦିଶନ୍ତା, ତେବେ ସେ ହୁଅନ୍ତା ଅଦାମ୍, ମାଳିମା ଧ୍ୱଣ୍ଡ ବିବାହ କରିବାକୁ । କେତେଦିନ ଏ ସ୍ୱପ୍ନ ? ମାଳମା ଭାବୁଥାଏ,—ବରଂ ଯଦି ସେ ନଜେ ମଙ୍ଗ ଧରିଥାନ୍ତା, ଦୁଇ ହଳାସ୍ତ ବାହାରେ ମୋଡ଼ି ବୁଲେଇ ଜୀବନର ଗତି ଭିନ୍ନ ପ୍ରକାର କରିପାରନ୍ତା, ଘାଗକୁମାର ପ୍ରତିରୋଧ କରି ପାରନ୍ତା ନାହିଁ, ବଳେ ବାଙ୍କେଇ ଯାଥାନ୍ତା । ସେଇଆ ହିଁ କରିବାକୁ ପଡ଼ିବ ।

'ଅଜ୍ଞା'—ବୁଢ଼ା କର୍ମଚାରୀ, ତାଙ୍କର କୁଣ୍ଠିତ ଭଙ୍ଗୀ,—ବାଧରେ ପଡ଼ି ଆସିଛି, ଦୟାକରି ମୋର ବୟସକୁ ମନେରଖି ମତେ କ୍ଷମା କରିବେ, ଏହିପରି ଭାବଭଙ୍ଗୀ ।

'ଆଜ୍ଞା, ସେହି ଜରୁରୀ ଚିଠି, ତାର ଜବାବ୍ ଯେ କୌଣସି ମତେ ଆଜ ଡାକରେ ଯିବ । ଧଳା, ହଳଦିଆ, ନେଳି, ଗୋଲାପୀ କ୍ଲାଇକ ଚିଠି ପଠାଇ ସାରିଲିଣି; ତାପରେ ଏକ୍‌ସପ୍ରେସ ଚିଠି, ତାକୁ ତ ଟେଲିଗ୍ରାମ୍ ବୋଲି ମଣିବାକୁ ହେବ । ଆଉଥରେ 'ଙ' ଚିହ୍ନିତ କାଗଜ ପତାକାଟି ଦେଖିବା ହେବେ । ସେହି ଗାଡ଼ି ଲେଟ୍ ଲୁଚ, ପାଣି ଗଳୁଛି, ବିପଦ ପଡ଼ିପାରେ । 'ଚ' ଚିହ୍ନିତ—'

"ପରେ—" ଗମ୍ଭୀର ହୋଇ ମାଳମା କହିଲା । ଶବ୍ଦକୁ ଶୁଣିଲା ପରି ସଂସାରେ ଅନେକ ରହିଲା, ତଳ ତଳ ଅଲ୍ପେ ଥରୁଛି, ଭିତରୁ ବାହାରିଗଲା "ପରେ । କାହାକୁ ସ୍ପର୍ଶିଛ । ଜଣ ଦେଖୁଛନ୍ତି ? ଅଧଘଣ୍ଟାଏ ଅବକାଶ ପାଇବାକୁ ମୁଁ ହକ୍‌ଦାର ନା ନୁହେଁ ? କାହିଁକି ମୋତେ ଗୋଳମାଳ କରିଦେଉଛ ସବୁରିତ ଥରେ । ହଜ ଯାଅନ୍ତୁ । ପରେ—।' ସେ ସ୍ଫୁଲିଗଲେ ।

ବଡ଼ ରୁଢ଼ ହୋଇଗଲା ବୋଧହୁଏ, ମାଳମା ଭାବିଲା ।

ଏତେ ସାମାନ୍ୟ କଥାରେ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ ।
ଆରେ,…ବଗ୍ଘର ନମନ୍ଦଣି ଖୋଲା ହୋଇନାହିଁ !

ଗୋଟା ଆଙ୍ଗୁଠିରେ ମୋଡ଼ଧର ଫାଡ଼ଦେଲ ।

ଏଁ—ଏ କଣ ହେଲ !

ପାପକୁମାରର ବଗ୍ଘର କେଉଁ ଅଚିହ୍ନା ଝିଅ ସଙ୍ଗରେ ।

ବଗ୍ଘର ତାରଖ କାଲିଠୁଁ ଗଲଣି ।

'ପତ୍ରଦ୍ୱାରା ନମନ୍ତ୍ରଣ କଲି ତ୍ରୁଟି—" ଆଉ ପଢ଼ି ହେଲ ନାହିଁ, ମାଳମା ଫଡ଼ ଫଡ଼ ହୋଇ ଉଠାଯାଇ ପାଖ ବାଥ୍ରୁମରେ ପଶି କବାଟ କଲଦେଲ ।

ଅଧଘଣ୍ଟାଏ ଗଲାଣି, ବାଥ୍ରୁମ୍ କୋଠରୀରେ ମାଳମା ହାତ-ଘଡ଼ି ଦେଖିଲା,—ଅଧଘଣ୍ଟାଏ ସେ କାନ୍ଦ ସାରଲାଣି । ଖିଡ଼ ଖିଡ଼ ମଝରେ କାଚ ଝରକା ବାଟେ ହିପ୍ରହରେ ଖର ଧାସ ଫାଟିଯାଇ ସାତବର୍ଣ୍ଣ ହୋଇ ମୁହଁଧୂଆ କୁଣ୍ଡ ଉପରେ ପଡ଼ୁଛି । ଘଲ ବନ୍ଦ । ସବୁଦିନ ପର ନଜ ନଜ ସ୍ଥାନରେ ଥୁଆ ହୋଇଛି ପ୍ରତି ପଦାର୍ଥ । ଦୁନଅର ଅଖି ଦେଖୁନାହିଁ । ଆରସିରୁ ମୁହଁ ବୁଲେଇ ଆଣି ମାଳମା ଭାବଲା, କଣ ତାର କର୍ତ୍ତବ୍ୟ ? କାବ୍ୟ ନାୟିକା କର୍ତ୍ତବ୍ୟ, 'ମାଳ-ପାପିକା' ନାୟିକା କର୍ତ୍ତବ୍ୟ ସେ ଅତ୍ମହତ୍ୟା କରନ୍ତା । ଆତ୍ମ-ହତ୍ୟା,—ସ୍ୟାନାଇଡ଼୍,—ଦଉଡ଼,—କୂଅ,—ପେଟ୍ରୋଲ— । ଅ ରସିକୁ ଚାହିଁଲା, - ସେ ସ୍ଥୂଳ, ସେ ଦେହ । ଦୋହଳ ଚିବୁକ ଉପରେ କ୍ଷୀଣ ହସଟିଏ ଭସି ଉଠିଲା ବେଳକୁ ସେ ଦାବ ଦେଲା, ଦୁଇ ପାପୁଲର ଆଙ୍ଗୁଠିକୁ ଜାଲପର କର ମୁହଁକୁ ସେଥିରେ ପୋର ଦେଇ ଅଳ୍ପେ ଅଳ୍ପେ କାନ୍ଦ କାନ୍ଦ ଭାବଲଗିଲ । ହଁ, ଏହି ତ ମୁହୂର୍ତ୍ତ, କାନ୍ଦବା ଉଚିତ । ସଂସ୍କାର ଅନୁସାରେ ତାର କର୍ତ୍ତବ୍ୟ ଯେ ସବୁ ଦାନ ସେ ଫେରଇ ଦେବ, ଚିଠି ପତ୍ର, ଫଟୋ ସବୁ

ଟିକି ଟିକି କରି ଖଟ ଚୂଲିରେ ଜାଳିଦେବ । ଆଜି କର୍ତ୍ତବ୍ୟ ସବୁ ପରେ,—ଭାବିବାକୁ ବେଳ ମିଳିବ ।

ଛାତି ହାଲୁକା ଲାଗିଲାଣି ।

ଛଅ ବର୍ଷର ଭୋଗର ତପସ୍ୟା ।

କାହିଁ, କୁଆଡ଼େ ଗଲା ?

କେତେ କଣ ସେ ପ୍ରତାରଣା ?

ଧାପକୁମାର ସ୍ମୃତି ସ୍ୱପ୍ନର ରୂପକୁମାର ପରି ଦୂରେଇ ଦୂରେଇ ଯାଉଛି । କାନରେ ବାଜୁଡାଣି ଲହଡ଼ିର ଶବ୍ଦ ।

କବାଟ ଖୋଲିଲି । କଲିଂ ବେଲ ଚିପିଦେଲି, ଆସ୍ତେ ।

"ରଘୁଆଙ୍କୁ କହିଦିଅନ୍ତେ ଗାଡ଼ି ବାହାର କରିବେ ।"

'ଅଜ୍ଞା । ସେଇ ଗାର୍ଲସ୍କୁଲର ଛୁଟିଟା କଥା,—ପାଣି ଗଳୁଥିଲା '

'ପରେ ।'

ବୃଦ୍ଧ କର୍ମଚାରୀ ଶଙ୍କି ଶଙ୍କି ପଚାରିଲେ, 'ସ୍ୱାସ୍ଥ୍ୟ କଣ—' 'ଅସୁସ୍ଥ' ।

'ହେବନାହିଁ ? ହେବନାହିଁ ? ଅଳ୍ପ ଅଳ୍ପ ବର୍ଷା ହୋଇ ହେଉଛି ଖାସଣ ଗରମ୍, କାହାର ସ୍ୱାସ୍ଥ୍ୟ ଖରାପ ନ ହେବ ? ଏଇ ତ ଚାରି ଦିନ,— ଯାବତ ପେଟର ଗୋଳମାଳ, ଡିସେଣ୍ଟ୍ରି, ଡାଇରିଆ, କଲେରା —"

ମାଲିମା ଉଠି ଚାଲିଗଲା ।

ଆଜି ସୁନ୍ଦର ରାତି, ଆକାଶରେ ମେଘ ତଳେ ଜହ୍ନ । ସାମାନ୍ୟରେ ସେ ରଙ୍ଗ-କଣା, ସବୁ ନେଳି ଦିଶୁଛି । ଆଜି ହେନା ଫୁଲର ବାସ୍ନା ମନେ ପଡ଼ୁଛି, ରଜନୀଗନ୍ଧାର ବାସ୍ନା ମନେ ପଡ଼ୁଛି, ସହରର ନର୍ଦ୍ଦମାର ବାସ୍ନ ଉଠେଇ ପାଇଖାନାର

ଟଙ୍କ ବୋଝ ନେଇ ଚମକ ଆସୁଛି ହେଉଁ ମଦନ ମୋ ହର ଥଣ୍ଡା ଅନୁଭବ କରୁଛି, ନିଜ ଦେହର ମିଠାନ୍ଦିକ୍ ଅତଡ଼ର ବାସ୍ନାର ପବନରୁ ସୁବାସ ପାଉଛି । ବନ୍ଧୁ ବାନ୍ଧବଙ୍କ କୋଳାହଳ ମାନ୍ଦା ପଡ଼ିଲାଣି । ସିଡ଼ିବାଟେ ତର ତର ହୋଇ ଉପରକୁ ଉଠୁଛି ସେ, ଦୀପକକୁମାର । ଆଜ ତାର ଚଉଠି ରାତି ଓସରକୁ ଚଢ଼ି ଚାରିଆଡ଼କୁ ଥରେ ଚାହିଁଦେଲା, ଚଟାଣ ସେଜରେ ଗୋଟିଏ ବଖୁରିଟି, କଅଁଳ ଆଲୁଅ ଜଳୁଛି । ଟିପେଇ ଟିପେଇ ସେଇ ଅଡ଼କୁ—ସେ ଶବ୍ଦ କରିବ ନାହିଁ, ସ୍ୱପ୍ନରେ ସ୍ୱପ୍ନ ତରଳ ମିଶିଲା ଭଳି ମାଦକରେ ଗୁଡ଼ ହୋଇ ମିଶିଯିବ । ଚେନ୍ଦ୍ର, ମାନ୍ଦ, ସୁନ୍ଦର ରାତି ।

ଚାଦରରେ ବାଳ ଦେହର ବେଶକର ଧରାଟାଏ ଚଢ଼ିଗଲା । ତଳ ଗଳିରେ ବିଶ୍ରାମ କରୁଥିବା ଘୋଡ଼ାଟିଏ ନାକ ବାଟେ ଫଡ଼ ଫଡ଼ କଲା । ଦୀପକୁମାର ଚମକିଲା । ଖଟଧକୁ ଗୋଡ଼ ବଢ଼େଇ ଅଟକିଗଲା । ହେଇ, ଶୋଇଛି ଯେ, ସେ ତାର ନୂଆ ବିଭାହେଲା ସ୍ତ୍ରୀ । ଆଜ ଚଉଠି ରାତି ।

କେମିତି ଯାକସୁକ ହୋଇ ସେ ଶୋଇପଡ଼ିଛି—ଗୋଡ଼ ମୁହଁ ଘୋଡ଼େଇ ପକେଇଛି । ଦେଖୁଣୁ ହେଉଛି କଣ ଗୋଟିଏ ହେଉଛି ଯେପରି, ଉପରେ ଧଳା ଚାଦର ।

ପାଖକୁ ଯାଇ ସ୍ତବ୍ଧ ହୋଇ ଠିଆ ହେଲା । ଏମିତି ଶୋଇ ରହିଥିଲା ଆଉ ଜଣେ, ଅବିକଳ ଏହି ଭଙ୍ଗୀ । ସେ ତା'ର ବିବାହିତା ସ୍ତ୍ରୀ ନୁହେଁ । ଉତ୍ତେଜନା ଶୀତଳ ପଡ଼ିଗଲା । ଧଳା ଚାଦର ଓଢ଼ା ଧଳା କବର ଚହଲିଗଲା, ଚାଦର କାଢ଼ି ମୁହଁ ବାହାର କରି ତାର ବିବାହିତା ସ୍ତ୍ରୀ ତାକୁ ପ୍ରଥମ ସମ୍ଭାଷଣ କଲା 'ତୁମେ ପରା ମାଳମା ବୋଲି କାହାକୁ ବିଭା ହେଉଥିଲ, ନୁହେଁ ?

# ଝାଲ ଗୋଟାଏ ବାଙ୍କ

ବିଧାତା ତାଙ୍କୁ ପିଲ ଛୁଆ ଦେଇ ନାହିଁ ।

ବହୁତ ବେଳୁ ଲୁନତାନ ମମତାରୁ ଗୋଟାଏ ସାନ ଦୀର୍ଘଶ୍ୱାସ, ସାନ କହୁ ଦାଢ଼ୁଆ । ଜଟେନ୍ଦ୍ର ଚମକିପଡ଼ି କହିଲ, "ମମି, କଣ ହେଲ ?"

ତାର ହଲଚଲରେ ହିକ୍‌ଯାଠା କଟ୍‌କଲା ।

ମମତା କହିଲ, "କାହିଁ, କିଛି ନାହିଁ ତ ।"

"ଫେଁ କରି ନିଶ୍ୱାସଟା ଛାଡ଼ିଲ ଯେ ?"

"ଓ, ଏଇଆ," ଟାଣି ଓଠର ଭଉଁମୋଡ଼ ହୋଇ ହାଇ ମାରି ମମତା କହିଲ, "ବଡ଼ ଖୋଳ ଲାଗିଲଣି, ତହିଁରେ ଫେର୍ ତମେ ଆଣିଚ ଗୋଟାଏ ହାତଟଣା ରିକ୍‌ସା, ଖାଲି ଧକ୍‌କଡ଼ ଧକ୍‌କଡ଼ ।"

ଜଟେନ୍ଦ୍ର ହସିଲ, କହିଲ "ଭାଗ୍ୟକୁ ସାଇକେଲ ରିକ୍‌ସା ମିଳିଲା ନାହିଁ, ନ ହେଲେ ପନିପରିବା ପ୍ରଦର୍ଶନୀରୁ ତମେ ଯେ ଏକଦମ୍ ଅଧେ ବୋହି ନେଇ ବୁଲଚ, ଜାଗା ହୁଅନ୍ତା ନାହିଁ । ତମର ଏ ଡିଙ୍କିଆ ଲାଉ, ଏ ମୂଳା, ଏ ହାଣ୍ଡିଖୋଜିଆ ଝମ୍ପ ଆଳୁ, ଏ କଖାରୁ-କୋଇଡି, ଏଇ ଯେତେ ସମ୍ମାନ ସନ୍ତକ ତମେ ଗୋଟେଇ ନେଇ ବୁଲଚ ଯାଙ୍କୁ ତଳେ ଥୁଆଇ ଦେଇଥିଲେ ଯେ

ଥିର ହୋଇ ବସନ୍ତି ନାହିଁ, ରାସ୍ତା ଧୂଳିର ଦଉଡ଼ ପଛେ ଲାଗିଥାନ୍ତି, ବେଣ୍ଟୁ ବେକ ଉଡ଼ରେ ଥୋଇ କୁଣ୍ଢେଇ କାଖେଇ, "ନାଇଁ ନାଇଁ— ଧୋ ଧୋ—" କହି କହିକା ଯିବାକୁ ହୋଇଥାନ୍ତି । ଜଟେଦ୍ ଢସିଲା ଗୋଟାଏ ବଳଦ ହସ; ନାଟକୀୟ । ଢଜନ ମଣିଷଟା, ତାର ବଣାକ ପେଟ ଟପେଉକ କୁଦା ମାରି ଉଠିଲା । ରିକ୍ସା-ବାଲା ଅରଟିଏ ପଛକୁ ଅଟେଇଁ ଦେଇ ଛକ ଉପରକୁ ଉଠାଣିକ ଉଠାଇବା ପାଇଁ କସରତ ଆରମ୍ଭ କରିଦେଲା । ଆଗରୁ ଅଧୁଛି ମଟର ଲରି, ଶଗଡ, ସାଇକଲ । ବଡ଼ ସାନ ମିଶା ଏତେ ଗହଳରେ ତଥାପି ଶୁଭୁଛି ସେଇ ଟଣ ରିକ୍ସାର ପଟେଶ୍ୱାର ମୁଁ—ନାଦଟି, ଟିଣିଂ ଟିଣିଂ ଟିଣିଂ । ଧଡ଼ିଆ ଡେଙ୍ଗା ଲୋକଟିଏ, ମୁଣ୍ଡରେ ଚେପାଚେପି ପୁରୁଣା ଶୋଲ ଟୋପି, ଦେହରେ ଗାରି ଗାରିକିଆ ଫଡ଼ା ଫଡ଼ା ଟଳ କାମିଜ; ଝାଳରେ ଠାଏ ଠାଏ ପିଠିରେ ଲାଗି ଯାଇଛି, ତା ତଳେ ଟେକା ହୋଇଥିବା ଲୁଗାର ଅସ୍ତିତ୍ୱ ଘୋଡ଼େଇ ହୋଇ ପଡ଼ୁଛି, ଶିର ଦଉଡ଼ ବଳା ସୋଡୋଂ ଯୋଡୋଂ ଗୋଡ଼ ତଳେ ଦଟା ଜୋତା, ସେଇ ଚେପାଚେପି, ତାର ଗୋଟାଏ ବଶିଷ୍ଟ ଆକୃତି ନାହିଁ । ତାର ସବୁ ସଂଟକ ଦାଉ ଦାପଟରେ ଚେପା ଆହୁ ବକୁଚ, ଝୁଲି ପଡ଼ିଥିବା ମୁଛ ଯୋଡ଼ାଟାକ, ସବୁଠି ଧୂଳି, ଝାଳ, ଆଘାତ । କିନ୍ତୁ ଚେପା ହୋଇ ବି ସେ ଉଗ୍ର ଅଛି, ବଞ୍ଚିବାକୁ ତାର ଦୃଢ଼ ପ୍ରତିଜ୍ଞା । ଡରୁ ନାହିଁ; ଧମୋଉଁ ନାହିଁ, ବାଟଯାକ ମଟର ବାଲାଙ୍କଠୁଁ ଶଗଡ଼ବାଲା ଯାକେ ଯେବା ତା କାଟ ଝକଡ଼େଇଲା, ସମସ୍ତିଙ୍କ ତାର ମନଖୋଲା ଭାଷାରେ ସେ ଶୋଧା ଉଡ଼ାଇ ଉଡ଼ାଇ ଚାଲିଯାଉଛି ।

ସେ ମଲେ ବି ମରିବ ନାହିଁ; ତା'ର ସ୍ବଭାବଟି ହୁଆ; ବଡ଼ ହେଲେ ହେ'ବ ତ କହିବ ଏମାଡ଼େନ କପିଳ କେନା ପୁଅ ବୋଲି ।

ତାଙ୍କୁଇ ଦେଖିବାକୁ ସିନା ତାର ଏ ଦେହ ମେହନତ୍, କଣ କରାଯାଏ ଶୃଙ୍ଖଳ ସେଇଟା ପାଖପାଖ ଠିକ୍‌ଠାଏ ହେଲା, ଲୋକେ ବାହା ନିମିତ୍ତରେ ବି ବାଜା କାମେଇ ହେଲେଣି, ବାଣ ତ ବାଣ । ନ ହେଲେ ସେ ବି ଢୋଲ ବଜେଇ ବସିଥିଲା ପନ୍ଦର ଦିବସ । ବାଟ ଯାକ ତାର ସେଇ ଗୁଡ଼ାଏଟି ଛୁଆଙ୍କ ମୁହଁ ତା ଆଖିକି ଦିଶିଯାଏ । କଲାପୋଚେଇକି, ବଡଲୋକଙ୍କୁ, ଏ କଣ୍ଟ୍ରୋଲ ଯୁଗକୁ, କେତେ ଲୋକଙ୍କୁ ମୂର୍ଦ୍ଧାବାଦ ନାରା ଉଠେଇ ଯାଉ ଯାଉ ତାର ସେଇ ପିଲାଙ୍କ କଥା ବି ସେ ସବୁ କହୁଛି । ତାଙ୍କର ମା' ମରିଛି, ପିଇସୀ ପାଳୁଛି । ଆଜି ତାଙ୍କ ବୟସରେ କେତେ କଥା । ମମତା ସବୁ ଶୁଣିଛି ।

ଯାହା ଘରେ ପୋଷିବାକୁ ଧନ ଅଛି, ବିଧାତା ତା ଘରେ ଭୋଗ କରିବାକୁ ଜନ ଦିଏ ନାହିଁ, ଯାହା ଘରେ କିଛି ନାହିଁ, ତାର ଉପରେ ବୃଷ୍ଟି କରେ ଛୁଆପିଲା ! ସେମାନେ ବଡ଼ ହେବେ, ପେଟ ପାଇଁ ମେଣ୍ଢା ବାନ୍ଧିବେ, ଭୋକ ଦାଉରେ ପୃଥିବୀଯାକ ନିଆଁ ହୁଳା ବୁଲେଇ ଦେବେ । ବୋଧେ ସେଇଥିପାଇଁ ! ତେଣୁ ରିକ୍ସାବାଲାର ଛୁଆ ଅଛି, ତାର ନାହିଁ ।

ଦୋଷ କାହାର ? ଜୟଚନ୍ଦ୍ର ତାର ବନ୍ଧୁମାନଙ୍କୁ କହେ— "କଣ କରିବ କହ ? ତାଙ୍କ ପେଟରେ କଣ ଗୋଟାଏ ଗୋଳମାଳ ଅଛି । ତାଙ୍କ ସ୍ୱାସ୍ଥ୍ୟ ସେମିତି, ବାପ ଘରୁ ଆସିଲା ଦିନୁଁ ଯେତେ ଡାକ୍ତର ଦେଖାଇଲି ଯେତେ ଔଷଧପତ୍ର କଲି କିଛି ହେଲା ନାହିଁ, ଖାଲି ପଇସା ନଷ୍ଟ । ବାପା ବୋଉ ଲଗେଇଛନ୍ତି 'ଆଉ ଗୋଟାଏ ବାହା ହ, ନ ହେଲେ ଏ ବଂଶରେ ବତି ଜଳେଇବ କିଏ ? କିଏ ଆମକୁ ଟୋପେ ପାଣି ମନାଏ ଦବ ? ପିତୃପୁରୁଷ ସମ୍ପତ୍ତି ରହିଗଲେ ତାକୁ ଖାଇବ କିଏ ?' ବାପା ବୋଉ ଉଚ୍ଛନ୍ନ ହେବା କଥା, ତାଙ୍କୁ

ତାଙ୍କୁ ପନ୍ଦର ବରଷ ବିତିଗଲାଣି । କିନ୍ତୁ ତା କଣ ହୁଏ ? ପୁଅ ହେଲା ନାହିଁ ବୋଲି ଆଉ ଗୋଟାଏ ବାହା ! ହେଃ ।"

ବନ୍ଧୁବାନ୍ଧବଙ୍କ ଆଗରେ ଜିତେନ୍ଦ୍ରର ଏ ଉଦାର ବକ୍ତୃତା ଶୁଣିଲେ ଅସି ମମତା ଦେହରେ ବାଜେ । ମମତାର ହାଡରେ ନିଆଁ ଲାଗେ, ବ୍ୟଙ୍ଗରେ ହସି କହେ, "ତୁମକୁ ମୋ ରଣ, ତମେ ଆଉ ଗୋଟିଏ ବାହା ହ, ତମର ପିଲା ହେବ ।"

ଉଦାରତା ! ତାଙ୍କ ନିଜ ନାହିଁ : ସେ ପୁରୁଷ ପିଲା, ସେଥିପାଇଁ ଉଦାର ହୋଇ ବୁଝିବେ ସ୍ତ୍ରୀ ଦୋଷରୁ ପିଲା ହେଉ ନାହିଁ । କାରଣ ସେ ସ୍ତ୍ରୀ, ସେ କଥା ବୁଝିବ ନାହିଁ ତାର ସ୍ୱାମୀର ପିଲା ହେଉ ନାହିଁ । ଦୋଷଟା କଣ ସତେ ତାର । ଶଯ୍ୟାରେ ଏକାଠି ଏତେ କାଛରେ ଦୁହେଁ, ଅଥଚ ଏତେ ଦୂରରେ ।

ଭାବିଲେ ତାଙ୍କ ଉପରେ ରାଗ କୁହୁଳେ, ତାର ମନର ଅତୃପ୍ତ ଅଂଶରୁ ଯେଉଁ ହାକୁ ହାକୁ ହାଇଁପାଇଁ ବାହାରେ, ବେଳେ ବେଳେ ସେ ତାର ସାରା ଚେତନାକୁ ଢାଙ୍କି ରଖେ, ଅଜ୍ଞ ଭ୍ରମରେ ତାର ଗୋପନ ମନ ପ୍ରଶ୍ନ ପଚାରି ବସେ—ଏ ଲୋକଟା କିଏ ? କାହିଁ ମୁଁ ତ ଏଙ୍କୁ ଚିହ୍ନେ ନାହିଁ ! ସଂସାରରେ ଏତେ ଲୋକ ଥାଉଁ ଥାଉଁ ଏ କାହିଁକି ବସ୍ତୁ ହେଲା ମୋତେ ଅତୃପ୍ତ ଦେବା ପାଇଁ ? ମମତା ଯେତେବେଳେ ଜିତେନ୍ଦ୍ରକୁ କଟାକ୍ଷ ପର ଟାଆଁସିଆ ଆଖିରେ ଅନାଏଁ କ୍ଷୋଭରେ, ରାଗରେ । ମନ ସେଠୁ ଫିଟି ଖସିଯାଏ ଅତି ଦୂରକୁ, ତାର ସାରା ବ୍ୟକ୍ତିତ୍ୱ ଜିତେନ୍ଦ୍ରଠୁଁ ଛାଡ଼ି ଓଟାରି ହୋଇ ପଛ ବୁଲେଇ ଦିଏ । ଅଥଚ ଦେହକୁ ଦେହ ପାଖ ପାଖ ଲଗାଇଲାପରି ରହେ, ବ୍ୟାବହାରିକ ଶିଷ୍ଟତା ଊଣା ପଡ଼େଉ ନାହିଁ । ବନ୍ଧୁଗଣ ବୁଲିଆସି ଜିତେନ୍ଦ୍ରଠୁଁ ଗପ ଆଉ ମମତାଠୁଁ ଖୁଆପିଆ ପାଇଁ ଈର୍ଷାରେ କୁହାକୋହି ହୋଇ ଘରକୁ ଯାଆନ୍ତି—

"ଘର କରଣା କହିବ ତ କିଛୁ ଆଉ ତା ସ୍ତ୍ରୀର । ସଂସାରରେ ସ୍ତ୍ରୀ ଏଇମାନେ, ଜୀବନରେ ପ୍ରତି ମିନଟ୍ ଉପଭୋଗ କରି ଚାଲିଛନ୍ତି । ଆଜ କି ସ୍ନେହ, କି କଥା, ପନ୍ଦର ବରଷ ହୋଇ ଗଲାଣି ବାହାଘରର କେତେ ବ ସେହି ମୋହ, ସେହି ସୋଗ, ସତେ ଯେମିତ କାଲି ଗଢ଼ାଟି ସରିଛି । ଆଉ ତାର ସ୍ତ୍ରୀକୁ ଦେଖ, କେତେ ଚମତ୍କାର ତା ଦେହକୁ ରଖିଛି, ଆଜି ଦେଖିଲେ ବି ଝୋଟିକିଏ । ଅବଶ୍ୟ ପିଲାଛୁଆ ହୋଇ ନାହାନ୍ତି । ନ ହେଲେ ବି ଯତ୍ନ ନ ନେଲେ କେହି ଏମିତ ସ୍ୱାସ୍ଥ୍ୟ ରଖିପାରେ ?"

ସେହି ସ୍ୱାସ୍ଥ୍ୟ ବି ତାର ଦୁଃଖର କାରଣ, ସେଠି ବି ପ୍ରୌଢ଼ତ୍ୱର ପୂର୍ଣ୍ଣ ଅବସ୍ଥିତ ନେଇ ଜିତେନ୍ଦ୍ର ବେଖାପ ହୋଇଯାଏ । ସେ ପୃଥୁଳା ପରି ମନ୍ଦିରେ ବିଶାଳ ହୋଇ ଯାଉଛି, ଆଉ ମାଦଳା ଅଥଚ ନାଁ ଟେସିହି ।

ଏକା ରିକ୍ସାରେ ଦୁଇହୋଟ ଏକାଠି ଲଦାଲଦି । ଜିତେନ୍ଦ୍ର ତାର ଦେହ ବିସ୍ତାର କରି ବସିଥିବାରୁ ମମତାର ଆସନ ତାର ଅଧେ ଦେହ ଉପରେ । ଅର୍ଦ୍ଧାଙ୍ଗିନୀ । ତାର ବେକତଳେ ଜିତେନ୍ଦ୍ରର ବାହା । ରିକ୍ସାରେ ବୁହାହୋଇ ଚାଲିଛି । ବିବାହିତ ଜୀବନର ଗଳ୍ପ ପଟୁଆର । ଲୋକେ ଚାହୁଁଛନ୍ତି । କାବୁଲ ଜୋତା ହାଓ୍ୱାଇ ସାର୍ଟ୍ ବ୍ରିଲିଆଣ୍ଟା କଲରର ବଙ୍କା କଲା ପରି ନଗ ଝଜଣ ତରୁଣ ସାଇକଲ ଚଢ଼ି ଲୁଂଗିରୁ ପୁଂଗିରୁ ହେଉଛନ୍ତି । ପାଖକୁ ଆସୁଛନ୍ତି, ଦୂରେଇ ଯାଉଛନ୍ତି ।

ଆଉ କେତେ ଆସିଲେଣି, ଗଲେଣି ।

ଅଡନ୍ଧା ବାଟୋଇଙ୍କର ମୋହ-ଗୋଳିଆ ଦୃଷ୍ଟି ଗାରବରେ ମମତା ମନକୁ ଭେଦୁଥିଲା, ଗାରବରେ ତାର ଗର୍ବ ଉପୁଯାଉଥିଲା । ଜିତେନ୍ଦ୍ରର ଘରକରଣା କରି ଆସି ସେ ଦେହକୁ ହେପାଜତ ରଖି

ଯାଉଛି । ଜଟଚନ୍ଦ୍ର ବି ତ ସେଇଆ ଖୋଜୁଥିଲା । ତେଣୁ ସେ ପିନ୍ଧିଛି ନକଲି ସିଲ୍‌କର ଛାପା ଶାଢ଼ୀ, ବେକରେ ନକଲି ମୋତିମାଳା, ସେଥିରେ ଉଜ୍ଜ୍ୱଳ ନକଲି ପଥର, ଖୋସା ଗଭାରେ ପ୍ଲାଷ୍ଟିକର ନକଲି ମଲ୍ଲିଫୁଲ ଯେଉଁଟା ସେ ସତେଜ ଅଥଚ ପାଣି ଖୋଜେ ନାହିଁ । ଆଖିରେ ନକଲି କଳା, ମୁହଁରେ ପ୍ରସାଧନ-ଗଢ଼ା ନକଲି ଶାନ୍ତିର ସ୍ମିତ ଛବି । ସମାଜର ସବୁ ନିୟମ ସେ ମାନି ଚଳୁଛି, ଆଜି ମୁଣ୍ଡ ଉପରେ ସିନ୍ଦୂର ଯେପରି କି ତା'ର ବିବାହିତ ଜୀବନର ଗର୍ବର ଟେକ, ଅଥଚ ମନେହୁଏ ବେଳେବେଳେ—ସେ ବି ନକଲି । ଆଜି ତାର ଏ ନକଲି ବ୍ୟକ୍ତିତ୍ୱରେ ଘାରି ହୋଇ ପଛେଇ ଦୂରରେ ଉଭିଁଷି ହେଉଛନ୍ତି ନକଲି ଜୀବନର ମୁହୂର୍ତ୍ତର ଉପାସକ ଦଳ, ଯେଉଁମାନେ ଚଳ ଚିତ୍ରରେ ଠିଆ ହୋଇ ଦୃଶ୍ୟ ଦେଖନ୍ତି ନାହିଁ, ନିବୁଜ ଘରେ ଦର୍ଶକ ହୋଇ ବସି ସିନେମା ଦେଖନ୍ତି, ଯେଉଁମାନଙ୍କୁ ଭଲ ଲାଗେ ହୋଟେଲ୍‌ରେ ଖାଇବା ଶହ ଶହ ଅଗ୍ରସ୍ଥ ମୁହଁରେ ଲଟେଇ ପିଉଥିବା ଲୁହା କପ୍‌କୁ ଆପଣା ଓଠରେ ଭିଡ଼ି ଧରି ତାହା ଭିତରୁ ପାଟିପୋଡ଼ା ଗରମ ଚା' ପିଇବା,—ଖାଲି ଶୁଖିଲା ପତର କ୍ୱାଥ ଆଉ ନକଲି ଦୁଧ । ଆଉ ଜଳନ୍ତ ସିଗାରେଟ୍ ପାଟିରେ ଯାକି ନକଲି ଷ୍ଟାଇଲ୍‌ର ପୋଜ ଧରିବା । ଏହି ଚିତ୍ରପୂଜକମାନେ ମମତାର ଛୁଟିକୁ ସ୍ୱୀକାର କରି ଯାଉଛନ୍ତି । ଆପଣା ଅଜାଣତରେ ସେ ଜଟଚନ୍ଦ୍ର ଉପରେ ଚଢ଼ି ଉଠୁଛି ।

ଜଟଚନ୍ଦ୍ର ଅନ୍ୟମନସ୍କ ଥିଲା । ଫଳ ପ୍ରଦର୍ଶନୀରେ ସେ ବି ମଣିଷ ଦେଖିଛି । ବୁଲିଯାଉ ଯାଉ ଆପଣା ମନଭିତରୁ ଗୋଟା ଗୋଟା କରି ଅନେକ ସ୍ମୃତି ସେ ଉପାଡ଼ି ଫୋପାଡ଼ି ଦେଲଣି, ଆଉ କେତେଟାକୁ ପାରୁନାହିଁ । କେତେ ଅମେଣ୍ଟା ଶୋଷର ହଳ୍ଦିଆ କାହାଣୀ ମୁଣ୍ଡି ପାଲଟି ତା ଆଖି ଆଗରେ ଝୁଲିଗଲେ, ମନରୁ

ଓଗାଡ଼ିବାକୁ ଯୁକ୍ତି ଖୋଜି ପାଉନାହିଁ । ସେ ଚୁପ୍ ହୋଇ ଭାବି ଯାଉଛି । ସେଠି ସ୍ୱପ୍ନର ବାଡ଼ ନାହିଁ, ଆପଣା ବର୍ତ୍ତମାନ ଅବସ୍ଥାର କଳନା ନାହିଁ ।

ସାଇକଲ୍ ଚକ୍‌ଟା ଚଢ଼ି ପେନ୍ସିଲ ସ୍ଖଳିଗଲା । ସୁନା ଖଣ୍ଡିକା ପରି ଝୁଣ୍ଟିଏ, ବସ୍ତୁଟି ମନରୁ ନ ଯାଉ । ସେତେବେଳେ ବି ତ ନେଇଆ ଥିଲା, କୋଡ଼ିଏ ବର୍ଷ ତଳେ । ତାର ପଛେ ପଛେ କାନ୍ଦୁଥିବ ସୃଷ୍ଟି ଆତ୍ମା, --ଉଦ୍‌ଗତ ବୀର ନୂଆ ବାରବୁଲା ଭକାଶ । ସେ ଦୂରରେ ଥାଇ ଚାହିଁ ରହିବ, ଭିତର ଠେଲି ପଶିବ, ଚଳନ୍ତି ଯାନର ଧକ୍‌କା ଖାଇବା ବଦଳ ମୁକ୍ତିଲାଭ । ତୁଏତ ଜହ୍ନ ରାତିରେ ଘର ଅଗଣା ପାଖରେ ଗୀତଟିଏ ଗାଇବ ଆପଣାକୁ କ୍ଷୀଣ କରି ସ୍ୱପ୍ନ ଦେଖିବ ସ୍ୱପ୍ନ ଗଢ଼ିବ । ତପସ୍ୟା କରି ପାଇବା ଆଗରୁ ଭିତରେ ଠେଲି ହୋଇଯିବ, କେଉଁ ଦୂରକୁ ହଜିଯିବ ।

ଝରେଣ ଅମଡ଼ା ମଡ଼ ଧାଇଁଥିଲା ।

ମମତା ବି ଧାଇଁଥିଲା ଆରୁବାଟେ । ଭିଡ଼ରେ ଜଣକୁ ସେ ବାଛି ନେଇଥିଲା । ଯେପରି କ କେତେକାଳ ତଳ୍ପା ମାନସପୁରୁଷ ଜୀବନ୍ତ ହୋଇ ଆଗେ ଆଗେ ଚାଲିଛି । ପଛେ ପଛେ ମମତା । ଆଉ କେହି ନାହିଁ । ଅନ୍ଧୁଣ୍ଡା ତାର ବାଟ, କେତେ ଉଞ୍ଚ ନୀଚ, ଖାଲ ଢିପ । କେବେ ସେ ଅସିଥିଲା ଚାଲିଯାଇଥିଲା, ପୁଣି ଦେଖା ମିଳିଛି । ଆଉ ମମତା ତାଠୁଁ ନିଜକୁ ଓଟାରି ନେଇ ପାରୁନାହିଁ, ଦୂରରେ ରହି ଥାଉ ହିସାବର ନିକଟ, ଲୋକାଲୟର ଅସଜପଣ । ତାର ମାୟାଭରା ଆକାଂକ୍ଷା ପୂର୍ଣ୍ଣ ହେବ ।

କେତେ ତଞ୍ଜର ଦିନ ସରିଗଲା, ସୂର୍ଯ୍ୟ ବୁଡ଼ିଗଲେ । ସରନ୍ତି ନସିଆ ଆଲୁଅରେ ଆଗରେ ଢିପ ଉପରେ ଗୋଟିଏ ମନ୍ଦିର, ପାଖରେ ଗୋଟିଏ ପଦ୍ମ ପୋଖରୀ । ମମତାର କଳ୍ପନାରେ ମାନସ-

ପୁରୁଷ ସେହି ଡିପ ଉପରକୁ ଚଢ଼ି ଯାଉଛନ୍ତି, ପଛେ ପଛେ ସେ ନଜେ । ଜଗେନ୍ଦ୍ର କଳ୍ପନାରେ ପୋଖରୀ କୂଳ ମୁହଁ । ତାର ସ୍ୱପ୍ନ । ତଳେ ପଦ୍ମବଣ, ତଳ ଯାଉଛ ତଳକୁ ଆଉ ଥଳନାହିଁ । ସେଇଠେ ବିଶ୍ରାମ ନେବ । ଏଥର, ଧରା ଦେବ ତ ?

ମଝିରେ ଧାଉଁଥିଲା ରିକ୍ସାବାଲା । ରିକ୍ସା ବାଙ୍କ ବୁଲିଲା ।

ଅଜାଣତରେ ଜଗେନ୍ଦ୍ରର ପିଠି ତଳକୁ ମମତା ବଢ଼େଇ ଦେଲା ଗୋଟିଏ ଥର ଥର ବାହା । ଜଗେନ୍ଦ୍ର ସଚେତ ତାର ସମଗ୍ର ମନ୍ଥଣ ଓଜନ ଦେଇ ଅଜାଡ଼ ଦେଲା ତା ଉପରେ ଦୁଇ ମନ୍ଥଣ ଓଜନର ଚାପ । ବାଟରେ ଝୁଣ୍ଟି ରିକ୍ସା ଧଡ଼ ଧଡ଼େଇଲା ।

ରିକ୍ସାବାଲା ପଚାରିଲା—"ଆଉକେତେ ଦୂର ବାବୁ ?"

ବଡ଼େଁ ଅପ୍ରସ୍ତୁତ ହେଲାପରେ କହିଲେ—"ଏଇ ବାଙ୍କଟା ବୁଲିଲେ"ତ, ପାଖ ହେଲା ।

—୦—

# ଆଦମୀ

ରେଲ୍‌ ଷ୍ଟେସନ୍‌ । ରାତ । ଦକ୍ଷିଣ ଯିବା ଗାଡ଼ି । ସେକେଣ୍ଡ୍‌ କ୍ଲାସର ଦୁଆରମୁହଁ ବାଟେ ପୁଣ୍ଡରୀକ ଆଗ ତାର ବୁଢ଼ୀମା'କୁ କୁଣ୍ଢେଇ କାଖେଇ ଭିତରକୁ ଠେଲିଦେଲା । ହାତ ଧରି ଉଠାଇ ଦେଲା ତାର ସ୍ତ୍ରୀକୁ ।

ତାପରେ ନିଜେ ସେ ଉଠିପଡ଼ିଲା ବେଳକୁ ମୁହାଁମୁହିଁ ହେଲା ପ୍ରତିବାଦର,—"ଏଠି ଜାଗା ନାହିଁ, ବୃଥା କାହିଁକି ଉଠିଲେ, ଏଁ ?"

ପ୍ରଶ୍ନକର୍ତ୍ତା କଥା ନ କହିଥିଲେ ବି ବାରି ହୋଇପଡୁଥାନ୍ତେ,—"ଧଡ଼ିଆ ହାଡ଼ୁଆ ଭଦ୍ରଲୋକ, ଗାଡ଼ୁଆ ମୁହଁରେ ମୋଟା ଚଷମା, ଧୋତି ପଞ୍ଜାବୀ, ହଲ ହଲ ଗୋଡ଼ତଳେ ଝୁମରା ଝୁମରା ଚପଲ୍‌ । ଅଧପୋଡ଼ା ସିଗାରେଟ୍‌ର ଲଞ୍ଜକୁ ମୁହଁରେ ଚେପି ଶୋଷି ପୁଣ୍ଡରୀକ ଉପରେ ଉପରେପଡ଼ି ଆଧିପତ୍ୟ ବିସ୍ତାର କରି ସେ କହିଲେ, "ମୁଁ ବାରମ୍ବାର ଆପଣଙ୍କୁ ସତର୍କ କରେଇଛି ଏ ବଖରାରେ ଜାଗା ନାହିଁ, ତଥାପି ଆପଣ ଉଠି ଆସିଲେ, ଦେଖନ୍ତୁ ବର୍ତ୍ତମାନ୍‌, ଜାଗା ତ ନାହିଁ ।"

କୁଲିକୁ ପଇସା ଦେଇ ଦେଇ କେଉଁ ସ୍ଥାନରେ ନିଜର ଜିନିଷପତ୍ର ରଖା ହୋଇଛି ଥରେ ଆଖି ବୁଲେଇଆଣି ଆଉ ଆଖିରେ ପୁଣ୍ଡରୀକ ସେ ଭଦ୍ରଲୋକଙ୍କୁ ଦେଖିନେଲା, ତାପରେ ସେ ମୋହିଁଲା ଗୋଟାଏ ବିଲ୍‌କୁଲ୍‌ ଖାଲି ପଡ଼ିଥିବା ବର୍ଥ ଆଡ଼କୁ ।

କହିଲା "ବୋଉ, ଠିଆ ହେଇ ରହିଲୁ କଣ ? ବିଛଣା ବିଛାଇ ଶୋଇପଡ଼ ତୁ ଏଠି ।"

"ଆରେ-ଆରେ-ଆରେ-," ଭଦ୍ରଲୋକ ହାକିଲେ, "ସେଠି ଲୋକ ଅଛନ୍ତି, ଯାଇଛନ୍ତି ପଦାକୁ ।"

ପୁଣ୍ଡରୀକ ଦେହ ବାଙ୍କେଇ ଗୁହିଁଲା, ଭଦ୍ରଲୋକ ଚୁପ୍ ହେଲେ । ପୁଣି କହିଲା "ବୋଉ, ଶୋଇ ପଡ଼ ଏଠି ।" ତରତର ହାତରେ ବିଛଣା ବିଛେଇ ପକେଇଲା । କିନ୍ତୁ ବୋଉ ବସିଲେ, ଶୋଇବାକୁ ନାମଙ୍ଗ । ସ୍ତ୍ରୀ ବି ସେଠି ବସିଲା ।

"ତୁମେ ବି ଶୋଇପଡ଼" ପୁଣ୍ଡରୀକ କହିଲା, କିନ୍ତୁ ଏକା ସ୍ଥାନରେ ବୋଉ ଓ ସ୍ତ୍ରୀ ସ୍ଥାନରେ ଉଭୟଙ୍କ ପାଇଁ ଜାଗା କରିବା ଅସମ୍ଭବ । ଦେଖିଲା, ଝରକାପାଖ ସୀଟ୍‌ରେ ଜାଗା ଅଛି ପ୍ରଚୁର । ଜଣେ ବୁଢ଼ୀ, ଅଳଙ୍କାର ନାଇ ଜଣେ ବୋହୂ, ଦୁହେଁ ବସିଛନ୍ତି, ନେଣିକ ଖାଲି ପଡ଼ିଛି । ଆପତ୍ତିକାରୀ ଭଦ୍ରଲୋକ ଘୁଞ୍ଚିଗଲେଣି ଉବା ସେ ମୁଣ୍ଡକୁ, ହେଠି ପାଇଖାନା କବାଟ ପାଖ ସାନ ସିଟ୍‌ରେ ସେ ଓ ଜଣେ ଯୁବତୀ, କଥୋପକଥନରେ ଲଗିଲେଣି ।

"ଶୋଇପଡ଼ ଏଇ ଝରକା ପାଖେ, ପବନ ବାଜିବ ।" ସ୍ତ୍ରୀ ଶୋଇଲେ ମୁଣ୍ଡପାଖେ ଅଚହ୍ଲା ବୋହୂଟି ।

ଗାଡ଼ି ଛାଡ଼ିଦେଲା ।

ଏଥର ଆଉ ବୁଢ଼ୀଠୁଁ ଆପତ୍ତି, "ଏମିତି ଯଦି ଲୋକେ ଆସି ଲମ୍ବ ଲମ୍ବ ହୋଇ ଶୋଇବେ, ତେବେ ଆମେ ଆଉ ବସିବୁ କାହିଁକି ?"

"ଆପଣ ବି କେଉଁଠି ଶୋଇପାରନ୍ତୁ," ପୁଣ୍ଡରୀକ କହିଲା ।

"ଏଇ ସୀଟ୍ ତ ଖାଲି ଥିଲା, ମୁଁ ଏଇଠି ଶୋଇଥାନ୍ତି ।"

"ଶୋଇ ତ ନାହାନ୍ତି, ଶୋଇଲେ କଣ ଜାଗା ନାହିଁ ?"

"ବାଃ ରେ" ବୁଢ଼ୀ କହିଲେ, "ମୁଁ ପଇସା ଦେଇ ଟିକେଟ୍ କାଟିଛି ନା ମାଗଣାରେ ଆସିଛି ? ନେଇ ଯାଅ ତମ ବୋହୂକୁ ଏଠୁ । ମୋର ଦରକାର ହେଲେ ମୁଁ ଶୋଇବ ।"

"କାହିଁକି ବୃଥା ବକ୍ ବକ୍ କରୁଛନ୍ତି ?" ପୁଲିସଟି ବିରକ୍ତ ହୋଇ କହିଲା । ବୁଢ଼ୀ ଚୁପ ହେଲେ, କାରଣ ଦେଖିଲେ ତାଙ୍କ ପକ୍ଷ ନେବାକୁ କେହି ନାହିଁ । ସୁଟ୍କେସରେ ବସି କରପତ୍ରେ ହାତେ ଜାଗା ଫାଙ୍କା ରଖି ତଥାପି ସେ କଷଦୃଷ୍ଟି ଢାଳି ଲାଗିଲେ ପୁଲିସଙ୍କ ଉପରକୁ, ତାର ଶୋଇଲା ସ୍ତ୍ରୀ ଉପରକୁ, ତାର ବୋଉ ଉପରକୁ ।

ସାମ୍ନାରେ ଏକ ଉପରବର୍ଥ ଖାଲି, ମନ ଭୁଲେଇବାକୁ ପୁଲିସଟି ଏହିମାନଙ୍କ ଉପରେ ନଜର ଦେଲା । ତାବାରେ ଅନ୍ୟ ସମସ୍ତେ ଶୋଇଛନ୍ତି, ଉପର ବର୍ଥରେ, ତଳ ବର୍ଥରେ । ସେହି ଆପତ୍ତିକାରୀ ଭଦ୍ରଲୋକ, ବୟସ ତିରିଶି ପଚାଶ ହେବ । ପୁଲିସଟି ଦେଖିଥିଲା । ସେ ଏ ବୁଢ଼ୀ ଓ ଏ ବୋହୂ ସହିତ କଥାଭାଷା କରି ଯାଇଛି । ଭାବ ଲାଗିଲା, କଣ ଏମାନଙ୍କ ସଂପର୍କ ?

ବୁଢ଼ୀ ଓ ବୋହୂ । ବୋହୂର ବୟସ ତିରିଶ ଉପରେ, ହୁଏତ ସେମାନେ ଶାଶୁ ବୋହୂ ହୋଇଥିବେ । ଚାଳିଶ ବର୍ଷର ଚଷମା ପିନ୍ଧା ଲୋକଟି ଓ ତା ଉପରେ ଅଧାଆଉଜା ହୋଇ ବସିଥିବା ଯୁବକଟି,—କଣ ସେମାନେ ପରସ୍ପରର ? କଣ ସେମାନେ ଏ ଶାଶୁ ବୋହୂଙ୍କର ? ଆପଣା ଭିତରେ ହସାହସି ପ୍ରଚୁର, ଗାଡ଼ି ନାଚ ନାଚ ଚାଲିଛି, ସେହି ନାଚ ସହିତ ତାଳ ମିଳେଇ ନାଚୁଛନ୍ତି ସେ ଦୁହେଁ ବ । ଯୁବକଟି ପ୍ରାୟ ବସି ପଡ଼ିଲାଣି ଯୁବକ ଉପରେ, ବେଲ୍ ମୋଟା ସୋଟା, କାହିଁ ନ ଥିବ ?

ଦୁର୍ବଳ ପୁରୁଷ ଅଥଚ ସେ ଯୁବତୀର କାମ୍ୟ ।

ହୁଏତ ତାଠି ଁ ସମ୍ଭା ରୋଗ ଅଛୁ । ତେଣୁ ତାର କାମନା ଉଗ୍ର । ନିର୍ବିକାରରେ ଲୁଟି ନେଉଛନ୍ତି ସେମାନେ ସାନ୍ନିଧ୍ୟର ଆନନ୍ଦ । ମୂହୂର୍ତ୍ତିକୁ ଉଜ୍ଜ୍ୱଳ କରୁଛନ୍ତି. ଭବୁ ଯେ ଯାହା ।

ଫେର୍ ହସ, ଯୁବତୀର ସୁସ୍ଥ ହସ ଭିତରେ ଟିଁ ଟିଁ ହୋଇ ଶୁଭୁଛି ତାର । ସେଥିି ତାର ଆନନ୍ଦ ବୁଝିବାର ହାକୁ ହି ।

କିଏସେ ଏମାନେ ? ଏମାନଙ୍କର ଜୀବନର ଦର୍ଶନ ଉପସ୍ଥିତ ମୂହୂର୍ତ୍ତିଟି କପି ଆଗକୁ ଯାଏ ନାହିଁ । ପରର ସୁଖ ପ୍ରତି ଅସହିଷ୍ଣୁ ଈର୍ଷା ପରାୟଣ, କଳହପ୍ରିୟ, କାହିଁକି ?

ଏହା ପଛରେ ଉତ୍କଟ ଜୀବନ ସଂଗ୍ରାମର ଇତିହାସ, ଅଭା-ବର ତାଡ଼ନା, ପରିସରର ସଂକୀର୍ଣ୍ଣତା । ଆଘାତ ପାଇ ଘାଉଡ଼ା ହେଲେ ମଣିଷ ଏହିପରି ହୁଏନ୍ତ, ହୁଏ ରୋଗରୁ ରୋଗ ଉପୁଜେ । ବ୍ୟକ୍ତିତ୍ୱରୁ ଖସିପଡ଼େ ସମ୍ଭ୍ରମ ଓ ଶାନ୍ତି ।

ଆହା !

ହୁଏତ ଏମାନଙ୍କର ଆପଣାର ବୋଲି ଗାଁ ନ ଥିବ, ଘର ନ ଥିବ । ଖାଲି ଉଡ଼ନ୍ତା ପରିବାର ।

ଯୁବତୀଟିର ବେଶ ଯାହା ହୋଇଛି, ତାକୁ ଭଦ୍ର କୁହାଯିବ ନାହିଁ ଏବଂ ଜାଣି ଜାଣି ସେ ନିଜକୁ ଆହୁରି ଅସମ୍ଭାଳ କରୁଛି । ହୁଏତ ତାର ଅନ୍ତରରେ ଅତୃପ୍ତ କାମନାର ପ୍ରବାହ ।

ମନେ ପଡ଼ୁଛି ବଙ୍ଗୀୟ ଉପନ୍ୟାସର ରେଳଚଢ଼ା ନାୟକ ନାୟିକା ।

ଆହା !

ବୁଢ଼ୀଟି ଝରକା ଆଡ଼କୁ ମୁହଁ ବୁଲେଇ ବସିଛି । ବୋଧ ମୁହଁ ଲଦ ବହିଛି, ଅତର୍କିତ ଭାବରେ ବେଳେ ବେଳେ ଗୁହ୍ନି ଦେଉଛି ପୁଣ୍ଡସାକ ଆଡ଼କୁ । ପୁଣ୍ଡସାକ ଲଜେଇ ଯାଉଛି । ତନ୍ଦ୍ରା

ବଳେଇ ଦେଉଛି ଏମାନଙ୍କ ପରମ୍ପରା ଆଡ଼କୁ । ବୋହୂର ଆଖି ଏଡ଼ିବାକୁ ଚାହୁଁଛି ।

କିଛି ସମୟ ପରେ ସେ ପାଖରୁ ଉଠି ଆସିଲା ସେହି ଯୁବକଟି । ସତେ ଅବା କ୍ଳାନ୍ତ, ତାର ମୁହଁରେ ଝାଳ । ସତେ ଯେପରି କ୍ଳାନ୍ତିରେ ଗୌରବ ଅନୁଭବ କରୁଛି, ସେହିପରି ପକେଟ୍‌ରୁ ରୁମାଲ କାଢ଼ି ଖୁବ୍ ଜୋର୍‌ରେ ଆପଣା ମୁହଁ ପାଖେ ହଲେଇ ଲାଗିଲା ଠିକ୍ ବୋହୂ ସାମନାରେ ।

ବୋହୂ ହସୁଛି ।

ଦୂରରେ ଦିଶୁଛି ଉଦାସ ଭାବେ ହାଇ ମାରି ମାରି ଦେହ ଛିଟରେଇ ଦେଇ ଯୁବକଟି ଶୋଇ ରହିଛି । ଚାହିଁଲେହିଁ ଆଗ ଲାଗେ,—ଯୁବକର ଦେହ । ପୁଣି ଲାଗେ,—ଜନ୍ତୁର ଦେହ । କଟାସ ପରି ଆଖି, ଅଦ୍ୟାପି ଜଳୁଛି । ସେହି ଆଡ଼କୁ ତାର ନଜର, ଯେଉଁଠି ଯୁବକଟି ସିନ୍ଦୂରଲଗା ବୋହୂ ମୁହଁପାଖେ ନଇଁପଡ଼ୁଛି । ଫୁସ୍ ଫୁସ୍ ହୋଇ ଚାଲିଛି ମନ୍ତ୍ରଣା । ସେମାନେ ପୁଣ୍ଡରୀକ ଆଡ଼କୁ ଅନାଇଁ ହସାହସି ହେଉଛନ୍ତି । ବେଶୀ ହସ ବୋହୂର ।

କାହିଁକି ? ସେତ ତାର ନିଭୃତ ଚାହାଣୀ ପାଖେ ଧରା ଦେଇନାହିଁ । ଚିହ୍ନା ହେବାକୁ ଖୋଜି ନାହିଁ ତାର ହାବ ଭାବରେ ବି !

ଠିକ୍ ସେଇଥିପାଇଁ ବୋଧହୁଏ ନାରୀ ଆସାଫଲ୍ୟକୁ ବୁଝେ ଅପମାନ ବୋଲି । ଅପମାନର ପ୍ରତିଶୋଧ ନେବାକୁ ଭୁଲେ ନାହିଁ ।

ସ୍ତ୍ରୀ ନରୋତ୍ତମ ନିଦରେ ଶୋଇଲାଣି । ମୁଣ୍ଡ ପଟେ ଅଚିହ୍ନା ବୋହୂ, କଣ୍ଟେଇଁ ବୁଢ଼ୀ । ସରଳ ପ୍ରାଣରେ ସମସ୍ତଙ୍କୁ ସେ ଆପଣାର କରିନିଏ । ପୁଣ୍ଡରୀକ ଦୃଷ୍ଟି ନିଦ୍ରିତା ସ୍ତ୍ରୀର ଓଠ ଉପରେ

ଭସ ଦେଲା । ଗ୍ରାବଲା, ଏ—ଆଜି ମୋନେ ! ଶୁଭୁଛି ପାନ ଛେଞ୍ଚୁର ଠକ୍ ଠକ୍ । ଚଟ୍ ବୁଲିଗଲା ସୂହାଣୀ । ତା ବୋଉ ପାନ ଛେଚୁଚ ।

"ଆଣ ବୋଉ, ମୁଁ ଛେଚିଦେବି ?"

"ନାହିଁରେ ପୁଅ, ତୋ ହାତ ଘୋଳହବ ।"

"ଆଣ ଦେ ।"

ଛଡ଼େଇ ନେଇ ପୂଜ୍ଞଗା ବୋଉ ଲାଗି ପାନ ଛେଚିଦେଲା । ଏଥର ସେପଟୁ ଢ଼ଘରୁ ରୋଳ ଉଠିଲ ।

ପରି ଫୁର୍ଫୁର୍ ।

ପୁଣ୍ଡଷ୍ଟକ ଆଡ଼କୁ ଗୁହିଁ ଯୁବକଟି ଧୀରେ ଧୀରେ କହିଲା, "ସେ ମୁଟଲଇଛି । ପାଉ ଏଥର ।"

ଉଠିଆସି ତାର ସାମ୍ନାରେ ତା ବୋଉ ପାଖ ସ୍ଥାନରେ ବସିପଡ଼ିଲା ବୋହୂଟି । ପଞ୍ଚକୁ ଆଜିକ ପଡ଼ିଲା । ପଛ ଆଡ଼କୁ ଫେଡ଼ିକ ଆସିଲ ତାର ଶାଢ଼ୀର ଧଡ଼ି ।

ପୁଣି ଏ କଣ ବକାର ? ପୁଣ୍ଡଷ୍ଟକ ଆଶ୍ଚର୍ଯ୍ୟ ହେଲ ।

ଗାଡ଼ିର ତଳରେ ଶୋଇ ପଡ଼ିଥିବା ସମାଜ, ଗଣ୍ଡ ଗୋଟାଏ । ଭଦ୍ରଲୋକଟି ଠିଆ ହୋଇ କଣ ଘରୁଛି ।

ଏଥରକ ବୋହୂ ଆଡ଼କୁ ଅନେଇଲ, ଢହେଁ ହସାହସି ହେଲେ ।

ତାପରେ ସେ ଭଦ୍ରଲୋକ ଯାଇ ବସିପଡ଼ିଲ ବୋହୂ ଉଠି ଆସିଥିବା ସ୍ଥାନରେ ପୁଣ୍ଡଷ୍ଟକର ସ୍ତ୍ରୀର ମୁଣ୍ଡପାଖରେ । ଧୀରେ ଲୁହ୍ରଟଳ ଅନ୍ତ୍ରଣ, ଜଙ୍ଘ ପଡ଼କେଇ ବସି ଜୋରରେ ଢ ଅଣ୍ଟୁ ବାଡ଼େଇ ଲଗିଲ । ଗୁହିଁ ରହିଲ ପୁଣ୍ଡଷ୍ଟକର ସ୍ତ୍ରୀର ମୁହଁକୁ ।

ସେ ପାଖରୁ ବୋହୂ ଖଲ ଖଲ ହୋଇ ହସିଉଠିଲା ।

ହଠାତ୍ ଯେପରି ପୁଣ୍ଡରୀକର ପ୍ରଶାନ୍ତ ମନ ଜୁଆରରେ ସମୁଦ୍ର ପରି ଉଚ୍ଛଳ ହୋଇ ଉଠିଲା, ଗୁହ୍ମ ଗୁହ୍ମ ମନସ୍ତତ୍ତ୍ୱ ପଢ଼ିବାର ନିଭୃତ ଆନନ୍ଦ ଗଲା ଛୁଟି । ତାର ଗୁଳାଗ ଇଞ୍ଚ ଛାତି ବସ୍ତାର କରି କାନ୍ଧର ମାଂସପେଶୀ ଟାଣକେଇ ଦେଇ ଭଦ୍ରଲୋକ ପାଖକୁ ଦ୍ରୁତ ଷେପାରେ ପହଞ୍ଚି ଯାଇ ସେ ତାର କାନ୍ଧ ଉପରେ ହାତ ଥୋଇଲା, ପାଟିବାଟେ ବାହାରିଗଲା ଗୋଟାଏ ଅସ୍ଫୁଟ ହୁଙ୍କାର । ଷଣ୍ଢୁଆ ପିଠିରେ ଚପିଲା ପରି ଏକାମୁଠାରେ ଭଦ୍ରଲୋକର କାନ୍ଧର ଏପାଖ ସେ ପାଖ ଚୁପି ଧରି ସେ ତାକୁ ଉଠେଇ ଠିଆକଲା ।

"ଆରେ, ମହାଶୟ ! ଏ କଣ କରୁଛନ୍ତି ! ଏ କଣ କରୁଛନ୍ତି !"

ହାତକୁ ଲାଗୁଛି ଗୋଟାଏ କଣ୍ଟିଆ ମାଛ, ହାଡ଼ୁଆ, ଚପି ଧରିଲେ ସେ ଠକ୍ ଠକ୍ ଥରୁଛି, କଁ କଁ କରୁଛି ।

"ଆରେ, ମହାଶୟ, ମହାଶୟ, ଦେହରେ ହାତ ଥୋଉ-ଛନ୍ତି ! କି ରକମ ଭଦ୍ରଲୋକ ଆପଣ—"

କଟମଟ କରି ପୁଣ୍ଡରୀକ ତା ମୁହଁକୁ ଚାହିଁଲା । ଆପଣାର ଚଷ୍ଟିଚାଖ ଠେଲି ଆସୁଥିବା ଶଳାଦେକୁ ଚଳକୁ ମାଡ଼ ଦେଇ ପୁଣ୍ଡରୀକ କହିଲା, "ଶୁଣ ବନ୍ଧୁ, ତମର ସ୍ଥାନ ହେଉ ସେଠି—" ପାଇଖାନା ଘର କବାଟ ପାଖେ ଛକପଡ଼ ଆଉଜିଥିବା ଯୁବତୀ ଆଡ଼କୁ ହାତ ଦେଖାଇଲା, "ପରର ସ୍ତ୍ରୀର ମୁଣ୍ଡପାଖେ ବସିବାକୁ ତୁମେ ଆଗେଇ ଆସୁଛ, ଲଜ୍ଜା ହୁଏ ତ ତୁମର ନାହିଁ, ତା ବୋଲି କଣ ଭୟ ପାଶୋରିଛ ?"

"ଆରେ ମହାଶୟ !—"

"ଚୁପ୍ ରହ—"

"ଆହାହା—" ଭଦ୍ରଲୋକ ଭୟରେ ସ୍ତବ୍ଧିଲ ।

"ସୁଗୁଚ୍ଛନ୍ତି କାର୍ତ୍ତିକ ମହାଶୟ, ପଦେ କହିଥିଲେ ତ ହୋଇଥାନ୍ତା । ଆପଣଙ୍କ ସ୍ତ୍ରୀର ଅସୁବିଧା ହେଉଛି ! ଆଚ୍ଛା, ମୁଁ ତେବେଣେ ବସୁଛି ।"

"ପଦେ କହିଥିଲେ ହୋଇଥାନ୍ତା ! କିଏ କହନ୍ତା ? ନିଜର ମନ କହୁ କହିଲା ନାହିଁ ? ଭଦ୍ରତା କହିଲା ନାହିଁ ? ନା କହନ୍ତା ଚୁଗୁମାଡ଼ ? ହେଃ ହେଃ ହେଃ—"

"ଆରେ ବାପରେ ! ନା, ମୋର ଭୁଲ ହୋଇଯାଇଛି ମହାଶୟ, ମତେ କ୍ଷମା କରନ୍ତୁ ।"

ଭଦ୍ରଲୋକ ଗଲେ ସେହି ଯୁବତୀ ବସିଥିବା ସ୍ଥାନକୁ । କିନ୍ତୁ ଯୁବତୀ ଉଠିଆସିଲା । ବସିଲା ପୁଣ୍ଡରୀକର ଠିକ୍ ସାମ୍ନାରେ । କୋହ୍ଲି ତାର ନିଜ ସ୍ଥାନକୁ ଉଠି ଚାଲିଗଲା ।

ଏଥର ଏମନ୍ତେ ଚୁପ୍‌ଚାପ୍ । ମଞ୍ଚରେ ଗୋଟାଏ ନାଟକୀୟ ଦୃଶ୍ୟ ଉପରେ ପର୍ଦା ପଡ଼ୁଛି । ପ୍ରାଣ ବିକଳରେ ପୁରୁଷ ତାର ଅଭିମାନ ଭୁଲି ବନବାସୀ ହୋଇଛି । ଅପମାନିତ ଦୁର୍ବଳ ପୁରୁଷକୁ ତ୍ୟାଗ କରି ନାରୀ ବିଜେତାର ପ୍ରଣୟପ୍ରାର୍ଥିନୀ ହୋଇଛି, ପ୍ରତିହିଂସା ସାଧିବାରେ ହାରିଯାଇ ଅଉ ଏକ ନାରୀ ପୁଣି ଲେଉଟି ଯାଇଛି ତାର ସ୍ଥାନକୁ ।

ହୁଏତ ଏମାନଙ୍କ ମନରେ ଆଗ୍ନେୟଗିରି ମାତୁଛି । ଦାର୍ଶନିକ ହୋଇ ଅବସ୍ଥାର ହେତୁ ଖୁଣ୍ଟି ଖୁଣ୍ଟି ବାରମ୍ବାର ସ୍ୱଗ ତହଣ୍ଟୁଛି ତାର ମନରେ ।

ହୋଉ ଗାଡ଼ିରେ ପାନ ପାକ ଦେଇ ଶୋଇ ପଡ଼ିଲେଣି, ସ୍ତ୍ରୀର ନିଦ ଭାଙ୍ଗୁନାହିଁ । ଯାହା ହେଉ, ଆଉ ତାଙ୍କର ନିଦରେ ବ୍ୟାଘାତ ଘଟିବ ନାହିଁ ।

ଅଳ୍ପ କିଛି ସମୟ ଚୁପ୍‌ଚାପ୍ । ବୋଧ ହୁଏ ଏକ ବାଟେ ପଢାକୁ ମୁଦ୍ଦା କରି ବସିଲାଣି । ଭଦ୍ରଲୋକ ଗୋଟିଏ ଜଣ ମାସିକ ପଢ଼ିବା ବାହାନାରେ ଲମ୍ବା ବହି ଉଡ଼ୁଆଳରେ ମୁହଁ ଲୁଚେଇ ଛନ୍ତି ।

ଏଥର ଯୁବତୀ । ସାମ୍ନା ବାର୍ଥରେ ପଛ ଆଡ଼କୁ ତଳପଡ଼ ଗୋଡ ଦୋଟି ଆଗକୁ ବଢେଇ ଦେଇ ସେହି ଏକା ଠାଣୀରେ ସେ ଶୋଇ ରହିଛି । ଓଠଁ।କ୍ ଗଣ୍ଠରେ ତାର ସ୍ବହାଣୀ ଓହ୍ଲେଇ ଆସୁଛି ପୁଣ୍ଡରୀକ ଆଡ଼କୁ । ବଳିଷ୍ଠ ପୁରୁଷ, ସୁନ୍ଦର ଯୁବା । ସେ ତାର ପୌରୁଷର ପରିଚୟ ଦେଇସାରିଛି । ସୁବେଶ । ହୃଦୟ ସମ୍ରାଜରେ ତାର ଆସନ ସୁପ୍ରତିଷ୍ଠିତ । ମାଧବୀ ଲତା ଲଟେଇବା ପାଇଁ ଉପଯୁକ୍ତ ଆଶ୍ରା ଶାଳଗଣ୍ଡି । ମୃଦୁହାସ୍ୟର ଉପାସିକା ଓଠଁ।କ୍ ଦୃଷ୍ଟିରେ ବାରମ୍ବାର ବୃଦ୍ଧି ରହିଛି ତାକୁ ।

ହଠାତ୍ ଦେଖିଲେ ଥଳଥଳି ହୋଇଥିବ କାହାର— ଗୋଲ୍‌ଡାରେ ବଢ଼ିଛି ।

ଝଳକି ଘରି ତାର ଦେହ ତଡ଼ି ରହିଛି । ଅଳସ ଭଙ୍ଗୀ । ତ ର ପଦ ଛନ୍ଦରେ କେବଳ ନାଗ ଦେହ ଉପରେ Accent ଓ Emphasisର ଚିହ୍ନ ।

ପୁଣ୍ଡରୀକ ସଚେ ଅବା ତପସ୍ୟାରେ ବସିଛି । ଗୁଣ୍ଡ ଉପରେ ବାହା ଛନ୍ଦେଇଛି । ଗୁରୁଗମ୍ଭୀର । ଚିନ୍ତାଶୀଳ ।

ହଠାତ୍ ସେ ଅନୁଭବ କଲା ଆପଣା ଗୋଡ ଉପରେ ନରମ ସ୍ପର୍ଶ । ଶୁଡ଼ୁଙ୍କନା ଲାଗିଲା । ଯୁବତୀର ଗୋଡ଼ ଲମ୍ବି ଆସୁଛି । ଆଖି ବୁଜି ତଳ ପଡ଼ିଛି ସେ । ସଚେ ଅବା ଖସି ଖସି ଆସୁଛି ଗାଡିର ଦୋହଲରେ ।

ଅସ୍ୱସ୍ତି ଅନୁଭବ କରି ପୁଣ୍ଡରୀକ ଠିଆହୋଇପଡ଼ିଲା । ଯୁବତୀର ଆଖି ଖୋଲିଗଲା । ନୀରବ ଚାହାଣିରେ ଅଭିବାଦନ ଜଣାଇଁ ସେକରଙ୍କୁ ଘୂଞ୍ଚିଗଲା, ପାଖେ ଜାଗା ଛାଡ଼ିଦେଲା ।

ଚାରିଆଡ଼ ଘୁଙ୍ଗୁଡ଼ି ଶୁଭୁଛି । କଉପଟିଆ ହୋଇ ଚାହିଁ ରହିଛି ଯୁବତୀ । ତା ପାଖରେ କେତେ ଖୋଲା ଜାଗା ।

ପୁଣ୍ଡରୀକ ଠିଆ ହୋଇ ପଡ଼ି ବୁଲିଲା । ସେ ପାଖୁ ଭଦ୍ରଲୋକ ଡାକ ପକେଇଲେ,—'ମହାଶୟ, ସିଗାରେଟ୍ ନେଇନ୍ତୁ ।"

"ନା, ଧନ୍ୟବାଦ ।"

ମୁହୂର୍ତ୍ତ ଚାଲିଯାଉଛି । ଯୁବତୀଟି ତାର ନିଜ ସ୍ଥାନକୁ ଚାଲିଯାଇ ଲମ୍ବା ହାଇ ମାରିବାର ଅଭିନୟ କରି ଭଦ୍ରଲୋକଙ୍କୁ କହିଲା "ମତେ ନିଦ ମାଡ଼ିଲାଣି, ମୁଁ ଏଠି ଶୁଏ । ତୁମେ ସେଠିକି ଯାଅ ।" ଭଦ୍ରଲୋକ ଉଠିଆସି କହିଲେ—"ମହାଶୟ, ଯିବେ କେତେ ଦୂର ?" ତାଙ୍କ ମୁହଁରେ ଥିଲା ଦୁର୍ବଳ ଆଶ୍ୱସ୍ତିର ହସ ।

—○—

## ଦିଲ୍ଲୀକା ଲଡ଼୍ଡୁ

ଦୂର ଦେଶରୁ ଦିଲ୍ଲୀ ଧାଇଁ ଆସିଛି ଦୁର୍ଗାଶଙ୍କର ଆଇ. ସି. ଏସ୍ ପରୀକ୍ଷା ଦେବ । ପୁରୁଣା ଦିଲ୍ଲୀର ଗୋଟିଏ ଟିନ ମଦ୍ରାସୀ ହୋଟେଲ୍‌ରେ ଦିନକୁ ପାଞ୍ଚଟଙ୍କା ଭଡ଼ାରେ ତାର ବସା ।

ବର୍ଷକେ ଥରେ ଆଇ. ସି. ଏସ୍ ପରୀକ୍ଷା । ଏବର୍ଷ ଆସିଛନ୍ତି ସେଥିପାଇଁ କାହିଁ ଅଢ଼େଇ ହଜାର ପରୀକ୍ଷାର୍ଥୀ, ପ୍ରତି ହୋଟେଲ୍ ସେମାନଙ୍କର ଗୋଟିଏ ଲେଖାଁ ପ୍ରଦର୍ଶନୀ । ଏଇ ହୋଟେଲ୍‌ରେ ତ, ଆସାମରୁ କମ୍ବେପାକେ, ବନାରସରୁ ସିବାକୁଣ୍ଡ ପାଳେ କେତେ ଦେଶର କେତେ ଲୋକ ସେଥିପାଇଁ ଅପେକ୍ଷା କରିଛନ୍ତି ।

ନିଆହେବେ ମାତ୍ର ସାତଜଣ ।

ଦୁର୍ଗାଶଙ୍କର ନିଜକଥା ଭାବେ । ସେ ମାୟାବାଦରେ ବିଶ୍ୱାସ କରେ । ଏପରି ତ ହୁଏ,—ଭାଗ୍ୟରେ ଥିଲେ ଅସମ୍ଭବ ବି ଘଟେ, ଭାଗ୍ୟର ପରିସର ଖୋଲି ଦେବାପାଇଁ ମୂଳହୁଁ କିଛି ପରିଶ୍ରମ ଦରକାର । ତା ସେ କରିଛି ଏବଂ କରୁଛି ।

ନିଜଛଡ଼ା ଅନ୍ୟ ଯେତେ ପରୀକ୍ଷାର୍ଥୀଙ୍କୁ ଦେଖେ, ମନେମନେ ସେମାନଙ୍କ ଅନୁପଯୁକ୍ତତା ଆଲୋଚନା କରି ଦେଖେ । ହନୁମନ୍ତରାଓ, ମୁଖସ୍ଥ କରିଛି ବହୁତ ବହି; କିନ୍ତୁ ତାର ଇଂରେଜୀ ଉଚ୍ଚାରଣ କେଡ଼େ ଖରାପ ପୁଣି ତାର ବେଶ, ତାର ଚାଲି । ହସ ମାଡ଼େ ।

ହୋଇପାରେ, ବନାରସ୍‌ର ପାଣ୍ଡେ ଚାଠୁଁ ଅଙ୍କ ଶିଖେ. କିନ୍ତୁ ହନୁମନ୍ତରାଓର ଆକୃତି ତା ନିଜ ବଳୁଛିରେ, ଆଉ ଅଧିକ କଣ ? ପାଣ୍ଡେ,—ଟେଢେହବା ଭଲ ହେଲେବି ମୁହଁର ଠାଣି ମାଦଳା, ବେଶୀ କଥା କହେ ନାହିଁ । ଷ୍ଟକେଟ କଲଣି ସ୍ତର ବର୍ଷ ହେବ, ଆଉ କଣ ପାଠ ମନେଥିବ ? ସିନ୍ଧର ଓ୍ୱାଧଓ୍ୱାନ,—ପାଠର ପାଖ ପଶି ନାହିଁ, ବଡ଼ଲୋକର ପିଲା, ତା ପକ୍ଷରେ ଏ ଗୋଟାଏ ସଉକ୍ କେବଳ । ଅଧ୍ୟାପକ ପୋଦ୍ଦାର,—ସେ ବ ଛୁ ବାଛୁ ନେଇଛନ୍ତି କଷ୍ଟ ବିଷୟମାନ, ପାଞ୍ଚ ବର୍ଷର ପରୀକ୍ଷା ଫଳ ପଢ଼ି ସେ ଦେଖିଛି ସେଥିରେ ଭଲ ନମ୍ବର ଉଠେନାହିଁ ।

ଏହିପରି ସମସ୍ତେ,—ଦୁର୍ଗାଶଙ୍କର ଭାବେ ।

ତେଣୁ ଯେତେବେଳେ ସମ୍ପ୍ରତିଙ୍କ ସହିତ ବସି ଭବିଷ୍ୟତ ବିଷୟରେ ସମ୍ପ୍ରତିଙ୍କ ଆଲୋଚନା ସେ ଶୁଣେ, ଦାର୍ଶନିକର ମନ ଯେମିତି ସେ ଭାବନାଏ ଚଣିଷ ମନରେ ଭ୍ରାନ୍ତ କେତେ, ସତ୍ୟ କେତେ । ମନ ଉଦାରତାରେ ଫଳ ପ୍ରତି ଆଶାପୂର୍ଣ୍ଣ ସ୍ୱପ୍ନ-ଗଢ଼ାଳି ମନ୍ଦିଷ ଜାତିକୁ ତାର କ୍ଷମା କରିବାକୁ ମନ ହୁଏ ।

ସମ୍ପ୍ରତିଙ୍କି ସାନ କରି ଦେଇ ସାଗଲା ପରେ ନିଜର ଆଶାରେ ସେ ବହୁଦୂର ଆଗେଇଯାଏ, ଭାବିକ ଅଧିକାଂଶ ଏହିପରି ଦରିର ଥିବେ । ତେଣୁ ତାର ପଥ ଉନ୍ମୁକ୍ତ ।

ତା ପରେ ?

ଆଇ. ସି.ଏସ୍ କହିଲେ ସେ କର୍ତ୍ତବ୍ୟର ଗୁରୁଭାର ଦେଖେନାହିଁ, ଦେଖେନାହିଁ ପରିଶ୍ରମରେ ଦିନରାତି ବିନ୍ଧିଥିବା ଜୀବନ, ଲାଂଛନା, ସମାଲୋଚନା । ସେ ଖାଲି ବୁଝେ ପଦବୀ, ସମ୍ମାନ,—ମୋଟା ଦରମା,—ସୁସ୍ଥି ଜୀବନ ମନ ଇଚ୍ଛାରେ ଗଢ଼ି ନେଲାଭଳି ।

ତାର କୈଶୋରର ସ୍ୱପ୍ନ ମୂର୍ତ୍ତିମନ୍ତ—ଆଇ. ସି. ଏସ୍ ।

ତାର ସ୍ଵଳରେ ଏକ ପ୍ରକାର ଦର୍ପ ଫୁଟି ଉଠେ, ପ୍ରକାଶ ପଏ ହୋଟେଲର ସ୍ବଜର ଖ୍ୱାଜ୍କୁ ଡାକିବାର ଏକ ଭଙ୍ଗୀରେ,— "ଖ୍ୱାନ୍, ପାନକାଣ୍ଡି", କବାଟ ବନ୍ଦ କରି ଅତି ସାବଧାନରେ ବେଶ ହୋଇ ବାରମ୍ବାର ଆରସିରେ ମିଳାଇ ମିଳାଇ ନିଜକୁ ପରୀକ୍ଷା କଲାବେଳେ ମନ ଅଚ୍ଛନ୍ନ କରି ବଢ଼ି ଉଠେ ଆଇ. ସି. ଏସ୍‌ର ମହାରୂଢ଼ ।

ହୋଇପାରେ ଅନ୍ୟମାନଙ୍କର ବି ସେହି ଏକା ବିକାର, ସମସ୍ତେ ସୁବ୍‌ସାହେବ୍ । ପାର୍ଟି ଖେଳେଇ ଖେଳେଇ ଇଂରାଜୀ ବୋଲି, ଇଂରାଜୀ କାଇଦା ଯଥାସାଧ୍ୟ, ବାଥ୍‌ରୁମ୍‌ରେ ପଶିଲେ ସିଠିମିର୍ ଓ ଗୀତ, ପଦାକୁ ବାହାରିଲେ ହାତରେ ସିଗାରେଟ୍ ଟିଣ, କେତେବା ତୁଣ୍ଡରେ ପାଇପ୍ ହାତରେ ଧୂଆଁ ପରି ମୂଣି ।

ସବୁ କେବଳ ସଙ୍କେତ, ଦୂରରେ ଆଇ. ସି. ଏସ୍ ।

ଏବଂ ତାଠୁ ଆହୁରି ଦୂରରେ, ଆହୁରି ନିଭୃତ ଗଭୀରରେ— ମଣିଷ ମନରେ ନିହିତ ପ୍ରବୃତ୍ତି କହୁ । ଖାଲି ପାଖ ପଡ଼ୋଶୀଙ୍କଠୁ ବଡ଼ ହୋଇ ଅନ୍ୟମାନଙ୍କ ଉପରେ ଉତ୍କର୍ଷ ଓ ପ୍ରଭୁପଣ ହାସଲ କରିବା ହିଁ ନୁହେଁ, ତାହା ସହିତ କେଉଁ କାମିନୀର ଢ଼ଳ ଢ଼ଳ ମୁହଁଟି, ତାହା ସହିତ ସଂପର୍କ ରଖି ଜୀବନର ବାଟ ବାଟ ଯିବାକୁ ତାଳେ ତାଳେ ମନର ଅନ୍ଵେଷା ଖିଅ୍ଲ୍ । କେତେକ ସ୍ୱପ୍ନ, କେତେକ ବିସ୍ମର ।

ଅତଏବ ଅଇ. ସି. ଏସ୍ ହେବାକୁ ହିଁ ହେବ ।

ଦୁର୍ଗାଶଙ୍କର ଲଗିପଡ଼େ ।

ଦିଲ୍ଲୀର ସେ ହାଡ଼ଭଙ୍ଗା ଶୀତ, ବୁଲି ବାହାରିଲେ ପାଦ-ତଳୁ ଶୀତ ଉଠିଆସେ । ଲେଖି ବସିଲେ ହାତ କୋଳି ମାଡିଯାଏ ଏବଂ ବିଡରେ ଯେତେ ଦରସ୍ତ ଶେଯ ହୋଡ଼ହୋଇ ଶେ ଇ

ରହିଲେ ହୃଷ୍ଟା ଶୀତ ଋତୁରେ ଯେ ହୋଇଯାଏ କଚେଇରେ ଚକ୍ଷୁ ଉମାନ୍ଥ ପର । ତଥାପି ସେପରି ଶୀତରେ ସେ ଉଠିବସି ପଢ଼େ, ପାଗଳ ପରି ପଢ଼େ, ଯେତେ ପଢ଼େ ଯେତେ ଲାଗେ ଅଭୀଷ୍ଟ ପାଖେଇ ଆସୁଛି, ପରିଶ୍ରମରୁ ସେ ଆନନ୍ଦ ପାଏ ।

ପରୀକ୍ଷା ଅଛି ଆଉ ସାତ ଦିନ । ଖବରବେଳେ ଖବର ପୁଛିବା ପାଇଁ ଦୁର୍ଗାଶଙ୍କର ଛାତ ଉପରେ ଚଢ଼ିଛି । ଉପରେ ଏହି ଗୋଟିଏ ସ୍ଥାନ ସେ ଆବିଷ୍କାର କରି ନେଇଛି । ଚୌକି ପକେଇ ବସି ପଢ଼ି ହେବ ମନଇଚ୍ଛା, କୌଣସି ପ୍ରକାର କୋଳାହଳ ଏଠି ନାହିଁ, କେବଳ ଉପରେ ଦିଲ୍ଲୀର ଶରତର ଆକାଶ, ସାମ୍ନାରେ ପଲ୍ଟଣ ହାତ ପାତାଳ, ତା ସେପାଖେ ଆଉ ଗୋଟାଏ ପ୍ରକାଣ୍ଡ ହୋଟେଲ, ତା'ର ଯନ୍ତ୍ରମହଲର ତଳ ଠିକ୍ ଏହି ପଦତଳରେ । ଏଠି ତାର କେତେଦିନ ସାଧନା ହୋଇଗଲାଣି, ଦୁଇ ପ୍ରହରେ ପାଠ ପଢ଼ା, ୩ଟା ବେଳେ ଏଇଠି ଚା' ଓ ଆମଲେଟ୍, ତା ପରେ ଶୀତବଢ଼େ, ସେ ତଳକୁ ଓହ୍ଲାଏ ।

ଇତିହାସର ଛାତ୍ର ଦୁର୍ଗାଶଙ୍କର । ଇତିହାସ ଆଇ. ସି.ଏସ୍‌ରେ ତାର ମୁଖ୍ୟ ବିଷୟ । ପଢ଼ି ପଢ଼ି ଛାତର ନିର୍ଜନତାରେ ସେ ମେଲା-ଦିଏ ତାର କଳ୍ପନା । ଇତିହାସର ଦିଲ୍ଲୀ କଳ୍ପନା ପାଇଁ ଖାଦ୍ୟ ଯୋଗାଏ ପ୍ରଚୁର । କି ପୁରୁଣା ସହର, ଯୁଗେ ଯୁଗେ କେତେ ଲୋକ ସ୍ୱପ୍ନଦେଖିଛନ୍ତି ତାକୁ ଧରି ରଖିବାକୁ, ଧରି ରଖି ବଶୀଭୂତ କରି ତାକୁ ଆପଣାର ସଂସ୍କାର ସଭ୍ୟତାରେ । ହିନ୍ଦୁ ତାକୁ ପିନ୍ଧେଇ-ଥିଲେ କଳା ସିନ୍ଦୁର; କାଚ ଚୁଡ଼ି, ପଠାଣ ପିନ୍ଧେଇଲା ସେରୱାନି, ମୋଗଲ ତାକୁ କଲା ଜଗତରେ ଶ୍ରେଷ୍ଠବିଳାସୀ, ତା ପରେ ଇଂରେଜ;—ଇଂରେଜ ଦେଲା ଟୋପି ଓ ଟାପୁ, ବଲ୍ ନାଚ ନଚେଇଲା । ତଥାପି ଦିଲ୍ଲୀର ପରିକଳ୍ପନାରେ ଯେପରିକି ଏକ

ବଟେ ଅସହାୟ ଲା, ତଥ ଭିଡ଼ ଓଟାର ହାତ ହଳକୁ ଆବରଣ ମୁକ୍ତ କରେ, କାହାର କବଳ କାନ୍ଦାର ପ୍ରବାହ ତାଠି ରହେନାହିଁ ବେଶି ବେଳ ମନେ ପଡ଼େ ସଭ୍ୟତାର ସମାଧି କୁରୁକ୍ଷେତ୍ର ସମତଳ, ସେହି ସମାଧି ପ୍ରାନ୍ତରେ ଦିଲ୍ଲୀ ଯେପରି କ ଏକ ମାୟାବିନୀ ଯୋଗିନୀ, ତାର ନାନା ଖେଳ ନାନା ଖିଆଲ ଯୁଗେ ଯୁଗେ । ତେଣୁ ଚିରସ୍ଥାୟୀ ହୋଇ ରହିବନାହିଁ ଏଠି କାହାର ଅସ୍ତିତ୍ୱ, ଯୁଗ ଯୁଗର ବନ୍ଧନ ସଭ୍ୟତାର କେନ୍ଦ୍ର ଏଠି ଖାଲି ଭଙ୍ଗା କୋଠାବାଡ଼ିର ସ୍ତୂପ, ପୁରୁଣା କୀର୍ତ୍ତି, ଅଥବା ସମାଧି, ଏ ନବଦିଲ୍ଲୀରେ ବସ୍ତୁତ ଦିଲ୍ଲୀର କଂକାଳ ।

ଭାବେ ଦୁର୍ଗାଶଙ୍କର । ମୁଗ୍‌ଧ ହୋଇ ଭାବେ । ନିଜକୁ ଅନ୍ତର୍ଦୃଷ୍ଟି ଦେଖେ ସେ ଅନାଗତ ଅଙ୍କରେ । ନିଜର ପଦଚିହ୍ନ ଦେଖେ, ନିଜ ପାଇଁ ଶୋକ କରେ, ପୁଣି କଳ୍ପନାରେ ହେବ ଭଗ୍ନ-ସ୍ତୂପ ମଧ୍ୟରେ ଜଳାଇ ରଖେ ଦୀପଶିଖା,—ମନକୁ ମନ କହେ ମୁହୂର୍ତ୍ତକର ଚେତନାହିଁ ଜୀବନ, ଦୂର ଭବିଷ୍ୟତରେ ବସ୍ତୁତ କେବଳ ମୃତ୍ୟୁ । କହେ ମରଣର ଘୁଇ ତଳେ ତଳେ ଜଳି ରହିଥିବା ଅଗଣିତ ଜୀବନ ଶିଖା, Formନଷ୍ଟ, ହୁଏ, ପ୍ରାଣର ଉତ୍ସ ନିଜକୁ ପ୍ରକାଶ କରେ ନୂଆ ରୂପରେ,— ଦିଲ୍ଲୀ ଥିଲ, ଦିଲ୍ଲୀ ଅଛି — ଶୋକ କଣ ? ଦୁଃଖ ବା କଣ ?

କ୍ରମେ ଗଡ଼ିପଡ଼େ ତାର ଚେତନା ଘଟଣାରୁ ବ୍ୟକ୍ତିକୁ, ଇତିହାସରୁ ସାହିତ୍ୟକୁ । ସେପାଖ କୋଠାରେ ମନିଷ କଲବଲ, ଯେ ସେହିମାନଙ୍କର ଜଣ ଜଣକ କଥା ଭାବେ । ତାର ଅତୀତ ସ୍ମୃତି ପଡ଼ିଆ ହୁଏ ଚଞ୍ଚଳ, ଆନନ୍ଦ ଦିଏ ।

ଆଜି ଏଣିକି ତେଣିକି ଅନାଇଁ ଅନାଇଁ ଦୃଷ୍ଟି ପଡ଼ିଲା ସେପାଖ କୋଠାର ବଖରାଏ ଘରେ ।

ଗୋଟିଏ ପୁବତୀ ।

କି ସୁନ୍ଦର !

ଏକା ରକ୍ତ-ନାଲି ରଙ୍ଗର ଢିଲା ପାଇଜାମା ପଞ୍ଜାବୀ ଉଡ଼ିଲା ପଡ଼ୁଛି। ସୁଗଠିତ ସୁଠାମ ଦେହ ଉପରେ କିଏ ଯେପରି ଢାଳି ଦେଇଛି ରଙ୍ଗ, ଜରି ମତ, ଚିପ ଖୋଲ,—ଏଇ ଚାରି ଚଳେ ଚଳେ ନାଗ-ଦେହ। ମୂର୍ତ୍ତିମନ୍ତ ଏକ ଦ୍ରୋହ। ସେହି ପ୍ରବାହରେ ଦୁଇ ଧାର ହୋଇ ବୋହି ଆସିଛି ତାର ବେଣୀ, ଉପରେ ଗୋଲାପ ଫୁଟିଛି, ତାର ମୁହଁ। ମଣିଷ ଏତେ ସୁନ୍ଦର ବି ହୁଏ।

ଦୁର୍ଗାଶଙ୍କର ଚାହିଁ ରହିଲା। ସ୍ନାନ-ନିଦ୍ରାଳୁତାରେ ତାର ସଂସ୍କାରମୁକ୍ତ ଚେତନା ଉନାବାଧାରେ ବୁଡ଼ି ଦେଲା ସେହି ସୌନ୍ଦର୍ଯ୍ୟରେ, ଆଜି ତାର ସ୍ୱତନ୍ତ୍ର ସତ୍ତା ନାହିଁ।

ସେହି ସୁନ୍ଦରୀର ଅଦେଖା ବାତାବରଣ ହୋଇ ସେହି ଗୋଟିଏ ଦୃଶ୍ୟରେ ଲାଗି ରହି ସେ ଘୂରି ବୁଲିଲା ଏଠୁ ସେଠିକି। ଏଘରୁ ସେ ଘର। ସେପାଖେ କବାଟବାଟେ ସେ ବାହାରୁଛି, ଏଥର ତାର ପୋଷାକ ନେଳି ଯମୁନା। ସେହି ନେଳି ଯମୁନାରେ ଚନ୍ଦ୍ର ପରି ତାର ମୁହଁ ଉଇଁଛି, ମନେ ପକାଉଛି ନଈ କରର ଗ୍ରାଇ, ମାଠବ ବତ, ଶାନ୍ତ, ସ୍ନିଗ୍ଧ। ତୃଣମୂ ଦୁଆରବାଟେ ସେ ବାହାରୁଛି। ଅତି ସବୁଜ ଚିରଶ୍ୟାମଳୀ ବସୁଧା ପରି। ମନେ ପଡ଼େ ଅଳ୍ପ ଖରାରେ ଅଧାନନ୍ଦୁଆ ଘାସ, ସେଠି ସେ ଉଞ୍ଚ ବୁଦାରେ ଗୋଟିକିଆ କେତକୀ ଫୁଲ।

ଦୁର୍ଗାଶଙ୍କର ଚାହିଁ ରହିଛି। ପଡ଼ା କଣ୍ଠିଏ ଚଳେ ପେସି ପଡ଼ିଲାଣି, ମୁହଁ ମାଡ଼ି ଶୋଇଛି। ଆଉ ଖଣ୍ଡିଏ ବହି ନିଜ ଅଞ୍ଜଳିରେ ଆଉଜିଛି, ତାର ପୃଷ୍ଠାରେ ମେଞ୍ଚାଏ ଲୋରୁକୋରୁ, ଆଉ ଖଣ୍ଡିଏ ତାର ହାତରୁ ଝୁଲୁଛି, ଆଇ. ସି. ଏସ୍‌ର ବନ୍ଦୀର ଛୁଟି ଯାଇ ସେ ହସି ବୁଲୁଛି ଜୀବନର ସୁଅରେ।

ଏହିପରି ନିତିଦିନ । ଯୁବକଟିର ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ସମ୍ପୂର୍ଣ୍ଣ ଆୟୋଜନ କରି ବହି ଖାତା ଧରି ଦୁମ୍‌ଦାମ୍ ସେ ସିଡ଼ିବାଟେ ଉଠିଯାଏ ଘରର ଉପରକୁ । ଫେରିଆସେ ଗ୍ରୀନେଜ୍ ଓ ରାତି-ବେଳେ ବହିଗୁଡ଼ିକ ଗୋଟେଇ ପୋଟେଇ ।

ତାପରେ ସେ ଭାବେ । ମନ ଚଞ୍ଚଳ ହଏ ଦୂରକୁ । ରାତିରେ ନିଦରେ ଶୋଇଲେ,—ସେ ଚେଇଁ ଉଠେ ନୂଆ ଦୁନିଆଁରେ ।

ତାର ମନ ସୃଷ୍ଟିକୁ ଝାଙ୍କିଦେଇ ଇତସ୍ତତଃ କରିଦେଇ ମାଡ଼ି ଆସିଲା 'ଆଇ. ସି. ଏସ୍ ପରୀକ୍ଷା । ଦୁର୍ଗାଶଙ୍କର ପରୀକ୍ଷା ଦେଲା । ପରୀକ୍ଷାର୍ଥୀଙ୍କ ମଝିରେ ତଥାପି ଜାମିନୀଚନ୍ଦ୍ର ଗୁରୁ ଉପରେ ବସି ବସି ସେପାଖକୁ ଚାହିଁ ନିଜକୁ ପ୍ରସ୍ତୁତ କରେ । ସବୁଦିନ ପରି ସେପାଖେ ରୂପର ସୃଷ୍ଟି ଫୁଟିଉଠେ, ଆଖିକୁ ବାନ୍ଧି ରଖେ, ଦୀର୍ଘଶ୍ୱାସ ଉଠିଯାଇ ପୁଣି ଯାଏ ହଜି ଭିତରର ଅନ୍ଧାରରେ ।

ତାପରେ ତାର ଯିବା ଦିନ । ପରୀକ୍ଷା ସରିଛି । ଲାଗୁଛି ଯେମିତି କି ଆପଣା ଭିତରୁ କଣ ଗୋଟାଏ ଚାଲିଯାଉଛି । ଭିତରଟା ଖାଲି ଫମ୍ପା ଫମ୍ପା । ମନେ ପଡ଼ୁଛି ଲାଭ କ୍ଷତିର ହିସାବ । ପରୀକ୍ଷା ଦେଇ ସେ ବୁଝିପାରିଛି । ଏଥର ଆଇ. ସି. ଏସ୍. ହେବା ତାର ଭାଗ୍ୟରେ ନାହିଁ । କେତେ ପ୍ରଶ୍ନର ଉତ୍ତର ସେ ଦେଇପାରି ନାହିଁ, କେତେ ପ୍ରଶ୍ନ ସେ ଛାଡ଼ି ଦେଇଛି, ଆଉ ଅନେକ ପ୍ରଶ୍ନ,—ପରୀକ୍ଷାଘରେ ହଠାତ୍ ତାଙ୍କୁ ଲାଗିଲା ସେ ସ୍ୱାର ଉତ୍ତର ଭୁଲି ଯାଇଛି ।

ତେଣୁ ଆଇ. ସି. ଏସ୍. ହେବା ତାର ହେବ ନାହିଁ ।

ଘର—କେତେ ଦୂର ସେ !

ଆଜି ରାତିରେ ମେଲ୍ ଧରି ଫେରିଯିବାକୁ ହେବ । ଗ୍ରୀନ-ଲେଜଟା ବେଳ ପାଖ ହେଲଣି । ଆଉ କୋଠାକୁ ଚାହିଁରହିଲା । ସେପାଖେ କେହି ନାହିଁ ।

ସେଦିନ ରାତି ୯ଟା ବେଳେ ରେଳରେ ବସି ଦୁର୍ଗାଶଙ୍କର ଚାହିଁ ରହିଥିଲ ଦିଲ୍ଲୀର ପ୍ଲାଟଫର୍ମକୁ । କାହାକୁ ଯେପରି କି ସେ ଖୋଜୁଥିଲା । ଗାଡ଼ି ଛାଡ଼ିଦେଲା । ଚାହୁଁ ଚାହୁଁ ଯମୁନା ନଦୀର ପୋଲ । ଗାଡ଼ିର ଘୋର ଗର୍ଜନ ଅନୁଭବ କଲା ନିଜ ଛାତି ଭିତରେ । ଦିଲ୍ଲୀ— ସମାଧିର ସହର, ସେଠି ଅଗଣିତ ନାଁ ନଜଣା ସମାଧି ଭିତରେ ରଖି ଦେଇ ଆସିଛି ନିଜର ଅଦେଖା ସମାଧି । ଘରକୁ ଚାଲିଛି ।

ଭାବିଲା, ଘରକୁ ଯାଉଛି, ନେଉଛି କଣ ? ନ ଜାଣିବା ଲୋକେ ପଚାରିବେ, ଦିଲ୍ଲୀକା ଲଡ଼ୁ ଆଣିଛ ?

—o—

# ସୁନା ମଉଗ

ରବକୁ କହୁଥିଲ, ଭାଇ ନମସ୍କାର । ସାଇକେଲରୁ ନ ଓହ୍ଲାଇ ପ୍ରହାର ଉଞ୍ଚେଇଲା ପରି ହାତଟା ଟେକିଦେଇ ପଳେଇ-ଥିଲା । ରାମ କେମିତି ରହ ରହ ଅନେଇ ଅନେଇ ଚାଲେ, ପାଖକୁ ଉଡିଯାଇ ପଚାରିଥିଲ—ହୋ ରାମବାବୁ, କେମିତି ? ମୋ ଧାରଣା ଭାଙ୍ଗି ଦେଇ ହଠାତ୍ ବଡ ବଡ଼ ପାହୁଣ୍ଡ ପକେଇ ମାଡ଼ ଚାଲିଥିଲ ସେ, ଯେପରି କି ହଠାତ୍ ସ୍ମରଣ ପଡ଼ୁଛି, ଘରେ ଛୁଆ ଉଠିଲଣି, ଦୁଧ ଖାଇବାକୁ କାନ୍ଦୁଛି । ବନୁ ଭାଇ—ଚାରି ମାଇଲ ଅତିକ୍ରମ କରି ତାଙ୍କ ଘରକୁ ଦୌଡ଼ି ଯାଉଥିଲ ସବୁଦିନ ପରି । ବନୁଭାଇ ଚଞ୍ଚଳ ଚାଲିଗଲେ, ଘରେ ପୁଅ ନାହିଁ, ସୁଧାର ପଡ଼ା ମନେପଡ଼ିଲା—ସେ ଘରେ ନରେଶ ଅପେକ୍ଷା କରିଛି, କବାଟ କିଳିଲେ ଗୋଳମାଳ ବନ୍ଦ ହେଲେ ଜଣେ ପଢେଇବ । ଆହା ବିଚରା, ଟିଉସନ ମାଷ୍ଟର ରଖିହୁଏ ନାହିଁ ଏ ମହରଗ ଦିନରେ । ହରଷମସ୍ତୀ ଭାଉଜ, ପୂର୍ବକାଳରେ ଗପୁଥିଲେ ବହୁତ, ସେତେ-ବେଳେ ତଣ୍ଟିରେ ଜୋର ଥିଲା—ଜୋରଟା ଦେଇ ଦେଇଛନ୍ତି ପିଲାଙ୍କୁ । କହୁଥିଲେ 'ବସିଥା କି, ଟିକିଏ ଚୁଲିରୁ ପାଉଁଶ କାଢ଼ିଦିଏଁ ।' ତା ମନର ମଦାରେ, ବସ୍ତାରେ ଖାଲି ସାଇକଲ ଗୁଡ଼ାକ

ପିଁ ପିଁ ବଉଡ଼ ପକାଉଛି, ଗାଡ଼ିଗୁଡ଼ାକ ଚାଲିଯାଉଛି ଧଡ଼ର ଧଡ଼ର । ସମସ୍ତେ ଚାଲି ଯାଉଛନ୍ତି, ସାଧାରଣ ଗତିରେ ଗତି ପକେଇବାକୁ ସାହାଯ୍ୟ କରିବାକୁ, ରିକ୍ସାବାଲା ଦୋକାନ ଦେଖିଲେ ଆହ୍ୱାନ କରୁଛନ୍ତି— "ବାବୁ ଯିବେ ।"

ଭାବନ୍ତି ଏ ଅଭିଶପ୍ତ ସହର । ଅଭିଶାପ ପୂର୍ଣ୍ଣ କରିବାକୁ ଖୋଜି ଚାଲିଛନ୍ତି ସିଏ, ଚାଲୁ ଚାଲୁ ଭାଙ୍ଗି ପଡ଼ିବ ଦିନେ । ରାସ୍ତା ପାଖରେ ଦେଖେ ଭଙ୍ଗା ଟିଣଘରେ ଖଣ୍ଡେ ଭଙ୍ଗା ଗାଡ଼ି, ଗୋଟିଏ ଚକ ଅଦ୍ୟାପି ଲାଗି ରହିଛି । ଖବର କାଗଜ ପତ୍ର ହାମୁଡ଼ଉଛି ପଡ଼ିଛି ବହୁଦିନୁ । ସେଠିଥର ଯାଏଁ ଯିବେ ଗାଡ଼ିଟା କଥା କହେ ।

ଆଜି କାହାରି ବେଳ ନାହିଁ ।

ସହର ଚାଲିଛି ଚାଲିଛି । ସୁନା ମିଳେଗ ନାହିଁ । ସାତେ ପାଞ୍ଚଟା ବଜିଛି । ଅଫିସରୁ ବାବୁମାନେ ଚାଲିଗଲେ । ସେ ପାଖେ କଚିରିରୁ ଛୁଟି ଚାଲିଲା ମଣିଷ ସୁଅ । କାଉ କାଉ ହାଉ ହାଉ । କଚିରି ପାଖ ତେନ୍ତୁଳି ଗଛମାନଙ୍କରେ ଶାନ୍ତିଶୃଙ୍ଖଳାରେ ବସା ବାନ୍ଧିଥିବା ବାଦୁଡ଼ି ପଲ ଚିଁ ଚିଁ କରି ଉଡ଼ିଲେ, ପଡ଼େ ନକ୍ଷତ୍ର, ଖାଲି ଚାଲି ଯାଉଥିବେ, ଚାଲିଯାଉଥିବେ, ଯେତେ ମଣିଷ ସେତେ ବାଟ ।

କିନ୍ତୁ ହଠାତ୍ ଏ କଣ ଦେଖୁଛି ?

ରାସ୍ତା ପ୍ରାୟ ବନ୍ଦ । ଓହ୍ଲାଇବାକୁ ଡେଙ୍ଗା ।

ଚାଲିଛି ଗୋଟିଏ ଶ୍ରେଷ୍ଠ ଶୋଭାଯାତ୍ରା । ନକ୍ଷତ୍ରରେ ମିଶିଥିବା ରାସ୍ତାରେ ଯେ ଆସୁଛି, ହଠାତ୍ ତାର ସହରିଆ ଯୋଜନା-ହେଲା ମୁହଁଟି ଜକି ଜକ ହୋଇଯାଉଛି କଡ଼ାତେଲ ମାଖିଲା ପରି । ସେ ଓହ୍ଲାଇ ପଡ଼ୁଛି, ସେ ଅଟକ ଯାଇ ଦଳରେ ମିଶୁଛି ।

ତାର ଚଞ୍ଚଳତା ଫିଟ୍‌ଉଠୁଛି ଚାଲିରେ, ଚାହାଣୀରେ, ଠାଣିରେ । ସେ ଠେଲାଠେଲି, ଧକାଧକ କରି ଆଗକୁ ମୋଡ଼ିବାକୁ ପ୍ରଚେଷ୍ଟା କରୁଛି । ଶାନ୍ତ ପ୍ରତିଯୋଗିତା, ମଣିଷର ମଣିଷପଣ ବଳକି ଉଠୁଛି । ଗଫୁର ଖାଁ, ତାର ଗୋଟିଏ କଣା; ଗୋଲପୀ ପଞ୍ଜାବୀ ଉପରେ କଳା ଫତୁଆ ପିନ୍ଧିଛି । ବା'ର ହୋଇ ପଡ଼େ; ସେ ତାର ସ୍ୱାସ୍ଥ୍ୟ ପ୍ରକାଶୁଛି । ଫୁଲି ହୋଇ ଟେକି ହୋଇ ଉଠୁଛି ତାର ଦେହ । ତାଙ୍କୁଟି କ୍ଷୁଦ୍ର ମାନବ । କିନ୍ତୁ ତାର ମୋଟା ମୋଟା ଚଷମା ମୁହଁକୁ ଦିଏ ଠାଣି, ଏବଂ ତାର ଗୋଜା ଗୋଜା ନଶ । ସେ ଅଛି ମଝିରେ, ଅନର୍ଗଳ ଇଂରେଜ ବକୁଛି, ସେଥିରେ ସେ ଧୁରନ୍ଧର । ପ୍ରଫୁଲ୍ଲ- ତାର ସୁଟ୍ ଘରି ଭଲ । ସୁନ୍ଦରଟି ମସୃଣ । ଆଗେ ଆଗେ ଚାଲିଛି ବଳ ବଳ । ରବି ମଧ୍ୟ ସେଠି । ପଞ୍ଜାବୀ ଖୁବ୍ ଜକ ଜକ । ସାଇ- କଲଟି ଧୋଷାର ଧୋଷାର ହାତ ଗୁଟି ଗୁଟି ଖୁବ୍ କହୁଛି । ସମସ୍ତ ପ୍ରଚୁର ଅଛି । ପଛେଇବାକୁ କାହାର ଇଚ୍ଛା ନାହିଁ ।

ଏବଂ ଏହି ଜନତା-ଭିଡ଼ଭିତରେ ଦେଖାଯିବ ଯେ, ଆଗେ ଆଗେ ଚାଲିଛନ୍ତି ଜଣେ ଭଦ୍ରଲୋକ, ଖୁବ୍ ଡେଙ୍ଗା, କିନ୍ତୁ ମୋଟା ଅତିହ୍ୱା । ମୁଣ୍ଡଉପରେ ବାର୍ଦ୍ଧକ୍ୟ ଓହ୍ଲାଇଛି କିନ୍ତୁ ସେଇଠି ଅଟକିଛି । ଆଖିରେ ଚଷମା, ମୁହଁରେ ଆପଣାଭୁଲା ଶାନ୍ତ । ସିଧା ଦେଖ ପଦମର୍ଯ୍ୟାଦା ସୂଚାଉଛି, ଅତି ଶୁଭ୍ର ବେଶ, ଗମ୍ଭୀର ଚାଲି ତାହା ବତାଇ ଦେଉଛି । ନିବସ୍ତ୍ର ମନରେ ନିରୁଦ୍ଦିଷ୍ଟ ଗତି । ଯେ ଆସୁଛି ତା ସଙ୍ଗେ କଥା କହୁଛନ୍ତି, ମଝିରେ ମଝିରେ, "ହେଇ ତ —", ଆରେ ଆପଣ ଯେ —" ।

ଏବଂ ତାଙ୍କର ପାଖରେ ପହଞ୍ଚିବାକୁ, ତାଙ୍କ ସଙ୍ଗେ କଥା ହେବାକୁ ସମସ୍ତେ ବ୍ୟାକୁଳ ଓ ଚଞ୍ଚଳ । ହେଇ ପ୍ରଫୁଲ୍ଲ ଲାଗିରହିଛି, କଣ କହୁଛି । ଆଉ ଟିକିକେ ହେବ ତାକୁ ଠେଲିଦେଲେଣି,

ହାଇକଲଟାକୁ ବାନ୍ଧ ପରି ଘୋଷାରି ଚାଲିଛି । ରଘୁ ସନ୍ଧରେ ଗଳାଯାଇ ପାଖକୁ ପହଞ୍ଚଗଲାଣି, କଣ କହୁଛି, ତେଙ୍ଗା ବେକ ନଇଁପଡ଼ିଲାଣି, କାନକୁ ତା ମୁହଁପାଖେ ପହଞ୍ଚାଇବାଲାଗି । ହେଇ ତାର ସୁଯୋଗ କଟିଗଲା ପାଖକୁ ଆସିଗଲେଣି । ଆଜ ଜଣେ ଭେଣ୍ଡା, ମୁହଁରେ ଗୋଟାଏ ଚୁରୁଟ୍ ।

ଫେରୁ ମିଆଁ ଗ୍ଲାସ ଫୁଙ୍କେଇ ଚାଲିଛି ପଛେ ପଛେ, ପାଖକୁ ପାଖକୁ ଯାଇ ପାରୁନାହିଁ ; ତା ଗୋଟିକିଆ ଆଖିରେ ଚେଷ୍ଟା ଖରାପଡ଼ ସେ ଆଖିମିଟିକା ମାରୁଛି । କିନ୍ତୁ ଅପ୍ରସନ୍ନ ନୁହେଁ ।

ହେଇ ତେଙ୍ଗା ଭଦ୍ରଲୋକଟି ଘୂରିପଡ଼ ଉପରକୁ ଚାହିଁଲେ, ସାଙ୍ଗେ ସାଙ୍ଗେ ସମସ୍ତେ ଉଣ୍ଟିପଡ଼ିଲେ ଉପରକୁ । ଭଦ୍ରଲୋକ କହିଲେ, "କି ସୁନ୍ଦର ଆକାଶର ରଙ୍ଗ ।" ସମସ୍ତେ ଏକା ସାଙ୍ଗକେ ସଚେତ ହୋଇ ପଡ଼ିଲେ, ପ୍ରକୃତରେ ଆକାଶ ଅଛି । ହବାବେଗର ସମତାଳ ରଖିବାକୁ ରଘୁ ବି ସେଥି ଆକାଶକୁ ଅନେଇଁ ରହିଲା । କିନ୍ତୁ ଠିକଏ ମଟେଇଗଲା, ତା ପରେ ସେ ପଡ଼ିଗଲାଣି ପଛରେ ।

ମୁଁ ବି ସେଇ ଦଳର ଯାଚ ନାସି, ପଚାରିଲି—ରଘୁ, ସେ ଭଦ୍ରଲୋକ କିଏ ? ପୁରୁଣା ବନ୍ଧୁତା ଝାଡରେ ଉତ୍ତର ଦେବାକୁ ଯାଇଁ ରଘୁଆଁ କଲା, କିନ୍ତୁ ହଠାତ୍ ତାର ନଜା ଚଢ଼ିଗଲା ଆଗକୁ, ସେ ଚାଲିପରି ଛୁଟିଲା ।

ଏଥର ପ୍ରଫୁଲ୍ଲ ଫେରୁ ମିଆଁ ପ୍ରତିଦ୍ୱନ୍ଦୀ । ପ୍ରଫୁଲ୍ଲର ଚମତ୍କାର ସ୍ୱାସ୍ଥ୍ୟ ଟଳ ଟଳ ଯେପରି କ ଅବଜ୍ଞା କରୁଛି, ଉପେକ୍ଷା କରୁଛି, ବାରମ୍ବାର ମୁଣ୍ଡ ହଲେଇ ଗଫୁର ଦେଖି ନେଉଛି ପ୍ରଫୁଲ୍ଲକୁ ଉପରୁ ତଳକୁ ।

ଆଉ ରାସ୍ତାରେ ଚଉକର ଢୋଲ ଗୁଳ ଯେଉଁମାନେ ଆସିପଡ଼ିଲେ । ହଠାତ୍ ଗଞ୍ଜ ମାଦା ଢୋଲଇଗଲା, ସମସ୍ତେ ସେଇ ତେଙ୍ଗା ଲୋକଟିକୁ ମୋହିଁ ଖାଲି ହିଁ ହିଁ ହିଁ ହିଁ । ଦଳ ବଢ଼ିଗଲା ।

ମୁଁ ବି ଚାଲିଛି ପଛେ ପଛେ । କାମ ନ ଥିବା ଦଳର ଅନେକ କାମ ଭୁଲିଗଲାଣି ଏତିକରେ । କିଛି ନ ହେଲେ ବସାକୁ ଫେରି ପିଣ୍ଡା ଉପରେ ବସି ବଣିଆଙ୍ଗୁଠି ଓ ବୁଢ଼ା ଆଙ୍ଗୁଠି ମଝିରେ ପାପୁଲି ଠାଙ୍କିଦେଇ ଦାଢ଼ରେ ମୁହଁ ଲଗେଇ ଫୁଙ୍କିଲେ ଗୋଟିଏ ଶ୍ରୁତିମଧୁର ସ୍ୱର ବାହାରେ ଏବଂ ଏଇ ସନ୍ତୁଷ୍ଟେ ପାଟିମୋକଡ଼ ଲେଉଟୁଥାନ୍ତି, ଦେଖିବାକୁ ଭଲଲାଗେ ।

ଅଥଚ — ।

ଆଶ୍ଚର୍ଯ୍ୟ ଲାଗିଲା । କାରମ୍ମାର ଶୁଣିଲା, କାହିଁକି ?

କି ମାୟାରେ ଏହି ଆଶ୍ଚର୍ଯ୍ୟ ଭଦ୍ରଲୋକ ସମସ୍ତଙ୍କ ମନରେ ଆଣି ପାରୁଛନ୍ତି, ସମୟ ନ ଥିବାର ଗୋଟିଏ ଅପରୂପ ଧାରଣା, ମହାଶୂନ୍ୟରେ ବିଳାସ । ହାତର ଘଣ୍ଟା, ଗୁମ୍ଭର ଘଣ୍ଟା, କାନ୍ଥର ଘଣ୍ଟା ବନ୍ଦ ଏକାବେଳକେ, କେହି ତ କହୁନାହିଁ କାମ ଅଛି ବୋଲି । କି ମୋହମାରେ ଏତେ ଲୋକଙ୍କୁ ଆକର୍ଷଣ କରିହୁଏ, ଚପଳ କରିହୁଏ, ଆପଣାଭୁଲା କରି ହୁଏ ? କିନ୍ତୁ ଏତିକିରେ ଶେଷ ହେବ ନାହିଁ କେବେ, ଏ କେବଳ ଖଣ୍ଡପାହା । ତା ପରେ ?

ପଛେ ପଛେ ଚାଲିଛି । ହଠାତ୍ ଠାଏ, ସାମନାରେ ଚହଲ ପଡ଼ିଗଲା । ଛଡ଼ାଛଡ଼ି ଠେଲାଠେଲି ଭୁଷାଭୁଷି । ଏକାବେଳକେ ସମସ୍ତଙ୍କ ବ୍ୟକ୍ତିତ୍ୱ ଯେପରି କ ହେଣ୍ଟାଳ ଉଠୁଛି, ମୁଁ ବ ମୁଁ ବ ମୁଁ ବ । ଏକାଥରକେ ସମସ୍ତେ ମୋହିଁଛନ୍ତି ନଈ ଆଡ଼କୁ ।

କ ଦୃଶ୍ୟ । ନଈକୂଳ ରାସ୍ତାର ବେପାପାଖେ ଚଉରୋଟି ଯୁବତୀ, ବଡ଼ଟି ହାତରେ ଦେଢ଼ବର୍ଷର ଛୁଆଟିଏ । ଏକାଥରକେ ହେନେଙ୍କ ଉଚ୍ଛ୍ୱସିତ ଆନନ୍ଦରେ "ବାପା-ବାପା-ବାପା —" ଗୋଲାପୀ ପଣ୍ଟ ସାବୁଜା ପଣ୍ଟ, ବାଇଗଣି ପଣ୍ଟ । ତଳେ ଢିଲା ପାଇଜାମା, ସ୍ୱଚ୍ଛ ମଣି ବନ୍ଧନ ନୁହେଁ, ଆଶ୍ରିତ । ତା ଉପରେ ପାତଳ ପଞ୍ଜାବୀ । ପିଠି ଆଡ଼େ ବେଣୀ ଦୋହଲୁଛି, ଥରେ ମୁହଁ ବୁଲେଇଲେ ଗୁଡ଼ିଏ ହୋଇ କଥା କହୁଛି ବ ପିଠିଆଡ଼େ । ନାନା ପ୍ରକାର ଭଙ୍ଗୀ କରୁଛନ୍ତି । କୁନ୍ଦ ଯା'ଇ ଅଟକି ଗଳପଣ ଗୁଲୁଛନ୍ତି । ନମସ୍କାରର ପ୍ରତି ନମସ୍କାର ଜଣାଉଁ ଜଣାଙ୍କ ଦେହରେ ଲୀଳାୟିତ ହେଉଛି ପ୍ରାଚ୍ୟ ନୃତ୍ୟ-କଳାର ଭଙ୍ଗୀ, ମନର ଦେହରେ ଖୋଳା ହୋଇଥିବା ନୂଆ ପତ୍ର । ଏବଂ ସେ ପାଖେ ସେ ଭଦ୍ରଲୋକ ଦଳ, ହଠାତ୍ ସେଠ ବ ଜୀବନ ପଲ୍ଲବ ଉଠିଛି, ଯେମାନେ ବ ମନର ଦେହରେ ନୂଆ ପତ୍ର ।

ଉଚ୍ଛ୍ୱାସ ଠେଳହୋଇ ଅଟକିଲା ଗୋଟାଏ ପର୍ଦ୍ଦାରେ, ତା ପରେ ସେ ବାଟ ପାଇଲା ।

ଜଣେ ମହିଳା ଟେକି ଧରିଲେଣି ଛୁଆଟିକୁ ଇଙ୍ଗିତ ଦେଲେଣି—"ଯିବୁ ? ଯିବୁ ?" ଏକାଥରେ ଉଞ୍ଚେଇ ହୋଇଗଲା ସାତଯୋଡ଼ା ହାତ – ରବ, ରଘୁ, ଗଫୁର ମିଆଁ ଅନ୍ୟ କେତେ-ଜଣ । କଳାହାତ, ଗୋରାହାତ, ଦଣ୍ଡାବନ୍ଧା ହାତ, ଖାଲି ହାତ ।

ପ୍ରବଳ ପ୍ରତିଯୋଗିତା ।

ବୁଢ଼ା ଭଦ୍ରଲୋକ ପଛରେ ଗଣ୍ଠି ଝାଳ ପୋଛୁଛନ୍ତି ।

ପାଇଗଲା ପ୍ରଫୁଲ୍ଲ, ତାର ଦାମୀ ସୁଟ୍. ଛିଟ ରୁମାଲ, କୁଞ୍ଚ କୁଞ୍ଚ ସୁନ୍ଦର, ପିଲଳିଆ ମୁହଁ । ତାଠି ରଦ୍ଧର ଖବୁକତା ନାହିଁ, ଗଫୁରର ପୁରୁଷତା ନାହିଁ । ପିଲାଟିକୁ କାଖେଇ ଦେହଭରା ଦେଇ

ସୀଟ୍ ଉପରେ ବସେଇଲି । ଖୋକା, ଖୋକା, କହି ବାରମ୍ବାର ଗେଲ କରି କରି ନେଇ ଗଲି ଗଛରେ ବୁଲେଇ । ଏଥର ସାଇ-କଲରେ ବସିଲି । ଭିତରର ମଣିଷ ମୋର ଈର୍ଷାରେ ଚିତ୍କାର କରି ଉଠିଲା ଦେଇଗଲା "ତୁମିଆର ପ୍ରଫୁଲ୍ଲ, ପିଲାଟା କାଲେ ସୁଟ୍ ମଇଲା କରିବ —" ଦାର୍ଶନିକ ପଣ ଭାବ ଭାବ ଗଲି, ଅଭିଶପ୍ତା ରାଜଧାନୀ ପୂର୍ବଧର୍ମର ପ୍ଲାବନରେ ଉଧୁରିବ ଅବା—'ମୋହିନୀ ମାୟା ଏନେ' ।

ରଘୁ, ଗଫୁର, ଚନ୍ଦୁ ଯେ ଝାଣୁଥିଲେ ସେ ଭଦ୍ରଲୋକ ନା, ସହାନୁଭୂତି ଜଣେଇବାକୁ ମୋର ବେଳ ନାହିଁ । ହଠାତ୍ ମନେ ପଡ଼ୁଛି ମୋର ବି କାମ ଅଛି ।



# ମଦ୍ୟପାନ

"ମୁଁ ମହାପାତ୍ର ··· ମୁଁ ··· ମୁଁ ··· ମହାପାତ୍ର— ଜାଣିଛନ୍ତି ସେ ? ଏଁ ?"

"ଅବଶ୍ୟ ଅବଶ୍ୟ, ଆପଣ—"

"ନିଶ୍ଚୟ । ତାଙ୍କର ଜାଣିବା ଉଚିତ । କଣ ସେ ଜାଣନ୍ତି ? ଇଡିଅଟ୍ । ମୁଁ ମହାପାତ୍ର, ମୁଁ—ମତେ ପୁଣି ? ହେଁଃ—"

କାହିଁକି କେଜାଣି, ଦି ପାହୁଣ୍ଡ ଆଗେଇ ଯାଇ କଟମଟ କରି ଅନେଇଁ ରହିଲା । ବନ୍ଧୁ ଖାରଗ୍ରଧବ ଜାମିଜ୍‌ରେ ଖୋଞ୍ଚାଏ ମାରି କହିଲା "ହେଇ, ସେମିତି କାହିଁକି ଅନେଇଚୁ ଜଗଧାଣ, ସେ କିଏ ତୁ ଜାଣିଚୁ ?"

ଅନ୍ୟମନସ୍କ ହୋଇ ବିରକ୍ତ ହୋଇ କହିଲା,—"ଉଃ ।"

ସିଧା ଦେଖିଲା, ରାସ୍ତାରେ ସେ ଦୁଇଜଣ ଚାଲିଛନ୍ତି । ଜଣେ କ୍ଷୁଦ୍ର ମନୁଷ୍ୟ, ଟଳଟଳ ଚାଲି, ଦେଖିଲା ମାତ୍ରେ କହିଦେଇ ହେବ ସେ "ହାଁ-ଜି" ଦଳର, ଅବଶ୍ୟ ଅବଶ୍ୟ,—ଏଥିରେ ସନ୍ଦେହ ନାହିଁ—ତା ନୁହେଁ କଣ ? ଏମିତି ସରଳ ଉକ୍ତିର ସେ ଆକର । ଆଉଜଣଙ୍କ ସଙ୍ଗେ ଖାର୍ଯ୍ୟକ୍ ଭାବରେ ଠିକ୍ ଡାହାଣ ପଛକୁ କୋଡ଼ଏ ଡିଗ୍ରୀରେ ନିଜର କକ୍ଷ ରଖି ସେ ଚାଲିଛନ୍ତି । କିନ୍ତୁ ଆଉ-ଜଣକ, ସେ 'ମୁଁ ମହାପାତ୍ର', ବଙ୍କା ବେତ ୯:ର ସୋଽହଂର

ଅବଚାର, ତାଙ୍କର ଆଡ଼କୁ ମୋର ଦୃଷ୍ଟି ଚହଲାଥିଲା । ଚଞ୍ଚଳ ଚଞ୍ଚଳ ଘବୁଥିଲି, କେଉଁଠି ମୁଁ ଦେଖିଛୁ ସ୍ତାଙ୍କୁ । ସ୍କୁଲରେ ମାଷ୍ଟର ! କେଉଁ ମାଷ୍ଟର ? ସୌମ୍ୟ, ଶାନ୍ତ, ଜ୍ଞାନୀ, ନର୍ବୋଧ, ରୁକ୍ଷ, କର୍କଶ, ସ୍ନେହଶୀଳ କେତେ ମୂର୍ତ୍ତି ଚଳଚ୍ଚିତ୍ର ପର ଘସିଚାଲିଗଲା, ରହିଗଲା ଗୋଟିଏ, ସେ ଅଙ୍କ ମାଷ୍ଟର, ଯେ କ୍ଲାସ୍‌କୁ ଅଙ୍କ ପଢ଼େଇବାକୁ ଆସି ସଂସ୍କୃତ ପଣ୍ଡିତଙ୍କ ପଢ଼ାଇବା ପଦ୍ଧତି ଆଲୋଚନା କରୁଥିଲେ । ଇତିହାସ ପଢ଼େଇବାକୁ ପ୍ରୟାସ କରୁଥିଲେ, କହୁଥିଲେ ଇଂରାଜି ମାଷ୍ଟରଙ୍କ ଉଚ୍ଚାରଣ ଖରାପ । ଏ କଣ ସେ ?

ସେଣ୍ଡ ଶ୍ରେଣୀର ସେ କିନ୍ତୁ ନୁହନ୍ତି ।

ତା ପରେ ଷ୍ଟେସନରେ ଷ୍ଟେସନ ମାଷ୍ଟର, କଲେଜରେ ଡ଼ୁଲ ମାଷ୍ଟର, ଗ-ସା-ଗୁ ମାଷ୍ଟର ।

କିନ୍ତୁ କାହିଁକି ସେଇମାନଙ୍କରେ ବଶ୍ଳେଷଣ ଅଟକି ପାରୁନି ନାହିଁ । ଆଉ କେତେ ମଣିଷ ମନେ ପଡ଼ିଲେ, ଯେଉଁମାନେ ରେଳଗାଡ଼ିର ତୃତୀୟ ଶ୍ରେଣୀ ତଳାରେ ଉପରେ ପଡ଼ି କଜିଆ କରନ୍ତି । କହନ୍ତି, "ଏଠି ମୁଁ ବସିଥିଲି, ତମେ କିଏ ହେ ?" ଦୁର୍ବଳ, ଉଗ୍ରା କଜିଆ-ଖୋର ଲୋକ ଯେଉଁମାନେ ବାଇସ୍କୋପ ଦୁଆର ମୂହଁରେ ଅନେକଣ ଇଞ୍ଚ୍ ଗୁଣ୍ଡିରେ ପବନ ପୁରେଇ ଗଣ୍ଡି ଗଣ୍ଡିଆ କହୁଣୀରେ ଦୁଇପାଖ ଠେଲାଠେଲି କରନ୍ତି, ପୁଣି ସର୍କସରେ ଯେଉଁ ଲୋକଟି ଦଉଡ଼ ଉପରେ ଠିଆ ହୋଇ ଜନତାଙ୍କୁ ସାଲ୍ୟୁଟ୍ କରେ । ଏବଂ ପଞ୍ଚଗୁଣା ତେଲର ରଙ୍ଗରଙ୍ଗିଆ ଜାଅଲା ବିଜ୍ଞାପନ ଯେ ନେଇ ଚଷମା ପିନ୍ଧି ମୁଣ୍ଡରେ ଗୋଲ ଟୋପି ଲାଇ ନାନା ଜାତି ପୋଷାକର ରଙ୍ଗେଇ ଭଗ୍ନାଂଶରେ ସୁସଜ୍ଜିତ ହୋଇ ବଡ଼ ସଡ଼କରେ ଘାଟି କରି କରି ଯାଏ ।

"ମୁଁ ପଞ୍ଚଗୁଣା— ମୁଁ ବହୁଗୁଣା— ମୁଁ ଅସଲି ଅସଲି—"

ବକା ପରି ଘୁଞ୍ଚି ଘୁଞ୍ଚି ପଛେ ପଛେ ଟାଣିହୋଇ ଚାଲିଥିଲି । ମନ ଭିତରେ ଉଇଁ ଯାଉଥିଲା ଏମିତି ଖଣ୍ଡେ ଖଣ୍ଡେ ତୁଳନାତ୍ମକ ଚିତ୍ର । ଭାବୁଥିଲି—କିଏ ସେ ପୁ – କ ନାଁ—ଚିହ୍ନିଛୁ କେଉଁଠି, ଦେଖିଛୁ କେଉଁଠି । ଠିକ୍ ଠଉରେଇ ହେଉନାହିଁ ତ ?

ପାର୍କରେ କେବେ ମୁଁ ଯାଙ୍କର ବକ୍ତୃତା ଶୁଣିଥିଲି କି— କେବେ ଦେଖିଥିଲି ମଞ୍ଚ ଉପରେ ବାଲି ବାଟରେ ଏହି ଦୋହଲା ଚାଲିର ବିଚିତ୍ର ଭଙ୍ଗୀ ।

ନାଁ କଣ ?

“ଅରେ, ମୁଗ୍ଧ ହେଲୁରେ ଭାଇ,” ସାର ରାଘବ କହିଲା, “ଜାଣି ନୋଉଁ ଯାଙ୍କୁ, ଏ କପିଳେଶ ବାବୁ ପରା ।”

ନାଁଟି ଠିକ୍ ଅଠାକୁ ପିଠା ପରି ଚଟ୍ କରି ଲାଖିଗଲା, କହିଲି “କପିଳଶର ?”

“କପିଳେଶ୍ୱର ମହାପାତ୍ର ରେ ଚଗଲା—“ସାର ରାଘବ ସଂଭ୍ରମରେ ସଂକ୍ଷିପ୍ତ ସାର କରି ତା ନାଁ ଗାଁ ଠିକଣା ଓ ବୃତ୍ତିର ପରିଚୟ ଦେଲା ।

“କିନ୍ତୁ ଏତ ଗୋଟାଏ ପ୍ରକାରେ, ତୁ କଣ କହୁଛୁ ସାର-ରାଘବ, ହେଇ ଦେଖ୍ ଅଖିରେ ମୋଟା କଳା ଫ୍ରେମ୍‌ର ଚଷମା, ନାଲିଆ ଟାଇ, ହଳଦିଆ କୋଟ୍, ମୃଗୁବି ପ୍ୟାଣ୍ଟ୍, କଳା କ୍ୟାନଭାସ୍ ଜୋତା, ବୟସ ପଇଁଚାଳିଶ ବି ହେବ ନାହିଁ କିନ୍ତୁ ହାତରେ କି ପ୍ରକାଣ୍ଡ ମୋଟା ବେତ, ଏଥିରୁ ପ୍ରତ୍ୟେକ ଜିନିଷରୁ ଗୋଟାଏ ଗୋଟାଏ ଚରିତ୍ରର ସୂଚନା ପାଉନୁ ତୁ ? ଅଥଚ ଏକାଠାରେ ସବୁ ଅଛି ଏଠି !”

“ଚେଇ କୌଟିଲ୍ୟ ।” ଝରେ ବୁଦ୍ଧ ଗମ୍ଭୀର ହୋଇ କହିଲା, “... ଆ ନେକ ମୁଁ, ତୁ ଚିହ୍ନି ନୋଉଁ ତାଙ୍କୁ ?”

କିନ୍ତୁ ପ୍ରକୃତରେ, ମୋର ଔତ୍ସୁକ୍ୟ ବଳେଇ ଚଢ଼ୁଥାଏ । ଖାଉ-ଖଉଦଙ୍କୁ ଓଠାରେ ନେଇ ଧଇଁସ ପରି ଲାଗିଲା । ଭାବିଲି, ଏପରି ସୁଯୋଗ ହରାଇବା ଆଦୌ ଉଚିତ ହେବନାହିଁ । ଆମର ବ୍ୟବସାୟୀ ସହରର ବଡ଼ ରାସ୍ତାରେ, ଯେଉଁଠି ଏପାଖର ଦୋକାନର ଧାଜସଜ୍ଜା ଆରପାଖ ଦୋକାନର ସାଜସଜ୍ଜାଠୁ ସୁତାଖିଏକେ ଭଲେ, ସେଠି ଏଭଳି ଅଦ୍ଭୁତ ସବୁଦନେ ମିଳନ୍ତି ନାହିଁ । ଏ ଯେପରି ବିଧାତାର କେଉଁ ନୂତନ ସଂସ୍କରଣ, ସହରର ଅଭିନବ ।

ସାଢ଼େ ସୃଷ୍ଟିଠା ବେଳର ଖରା । ଗହଳି କୋଠାର ଫାଙ୍କ ସନ୍ଧରେ ଚେର୍ଛାହୋଇ ସେ ଚହ୍ଲାରିଆ ରାସ୍ତା ଉପରର ଧୂଳିକୁ ଅଲୁଅ କରିଯାଉଥାଏ । ଦିନ ଚୋଟାକରେ ସେହିପରି ସେ ବେଳ, ଯେତେବେଳେ ଦୁଏ ତ ତିଣି ଦୋକାନର, ଲୁହା ଦୋକାନର ମଜୁରିଆ ଭିଡ଼ମୋଡ଼ ହୋଇ ଭାବେ ମାଲିକ ତାକୁ ଉପଯୁକ୍ତ ମୂଲ ଦେଉନାହିଁ । ମାଲିକ ଭାବେ ଦିନଯାକ ଗଲା, ମଜୁରିଆ ପିଠୁ ଖାଇଁକଲା ବେଶୀ, କାମ ପାଇଲା କମ୍, ଝରକା ବାଟେ ମୁହଁ ଗଳେଇ ଦୂରକୁ ଚାହିଁ କାଶି ଛେପପକେଇ ଅଫିସର ସାନ ଲୁକରିଆ ଦୁଏ ତ ଭାବେ, ପୁଅଟିକୁ ଜର ହୋଇଥିଲା ଛାଡ଼ିବଣି କି ନାହିଁ । ଡାକ୍ତର ଡାକି ଯାଉଁ ଯାଉଁ ଡେରି ହୋଇଯିବ ପରା, ଡାକ୍ତର ନଥିବେ, ବାବାଜୀଙ୍କ ଦର୍ଶନକୁ ଯାଇଥିବେ, ତେବେ କଣ ହେବ ? ଯେତେବେଳେ ଅଫିସ ଚେକ ପାହାଚରେ ଓହ୍ଲେଇ ଯାଉ ଯାଉ ଦାୟିତ୍ୱପୂର୍ଣ୍ଣ ବଙ୍କାମ ଅଧ୍ୟକ୍ଷ ଅଟକି ଯାଇ ନୂଆ ସିଗାରେଟ୍ ଲଗାନ୍ତି, ଗୋରା ଟହଟହ ଟାଙ୍ଗରା ମୁଣ୍ଡ ଉପରେ ଟୋପିଟି ଥୋଇ ଦୂରର ଝରକୁ ଚାହିଁ ମନେ ମନେ ସମ୍ବୋଧନ କରନ୍ତି, ଅନ୍ଧାର ନର୍କ ହୋଇଯା, ଅନ୍ଧାର ନରମ

ହୋଇଯା । ବୋହୂମୁହଁ ଦେଖା ବେଳ ଆସୁ । ଆଜ ନୂଆ ଲୋକ ସଙ୍ଗେ ପୁରୁଣା ଆନନ୍ଦ ପାଇଁ ଯୋଜନା ଅଛି । କସ କରୁଥିବେକି ସେ ହାମୀନଟମ ପାଖେ ବସି ଇତିହାସ ବଢ଼ି ସମୟ କଟାଉଥିବେ କି ?

ସେହିପରି ବେଳ ଥିଲ ସେ, ହଠାତ୍ ସେତେବେଳେ ଟର୍ଚ୍ଚା ନଘାରେ ଗଡ଼ିଲ, ମଣିଷ ଭୂଣ ପଦ୍ବରେ ଘଟେ ।

ବନ୍ଧୁହୋଲାକନ ପାଖେ ହଟ୍ଟେସ୍ତ ନୟନରେ ଗୁହ୍ନିରହି ହେକ୍କଲ ଗଣ୍ଡିଏ ଟିଆ ହୋଇଥିଲ । ଆଲୁଅ ଖୁଣ୍ଟ ଉପରେ ଚଢ଼ି ପାଡମେଣ୍ଟ ଚେୟାରଟିଏ ଦଳର ଜନତା ପ୍ରତିନିଧିଙ୍କ ପୋଷାକ ପରିଚ୍ଛଦ, ବୋଲି ଓ ଗୁଳିର ସମାଲୋଚନାମୂଳକ ବିଶ୍ଳେଷଣ କରି ସମ୍ବନ୍ଧ ଖୋଜୁଥିଲ । ଏବଂ ଗୁହାରେ ଗ୍ଳଲ୍ଥିଲେ ସେ—ମହାପାତ୍ର, ଏବଂ କୋଉଠି ହୁଗ୍ରୀ ଟଙ୍ଗାଏକ ହେବେ ଡାହାଣ ପଟେ ତାଙ୍କର ସେ ଚନ୍ଦ୍ରଟି । ହୁଁ ହାଁ ବନ୍ଧୁ ।

ପିଠିଆଡ଼େ ପଡ଼ଞ୍ଚିଲେ । 'ମୁଁ କାହିଁ' କଥା କହୁଥାନ୍ତି ।

"ହଁ, ବାଷ, ପାନଅଛି ? ମୁଁ ସେଇକଥା କହୁଥିଲି—ମୋର ମତ ନ ନେଇ କାମ କଲେ, ସବୁ ଗୋଳମାଳ ହେଲ । ସେଥିପାଇଁ ମହାପାତ୍ର ମନ୍ତ୍ରୀ ହେବେ କାହିଁକି ? ମୋର ଭୁଲ କେହି କାହାର କରିପାରିବେ ନାହିଁ । କରନ୍ତୁ ଚେଷ୍ଟା, ଘଣ୍ଟଅଧରେ ଆସନ୍ତୁ, ପାଇବେ ଦେଇ—"

ହାତରେ ଝଟି ଥିଲେ ଦେଶ୍ରେ ଅଧେକଳା ସିଗାରେଟ । ସେହି ବନ୍ଧୁ ଦେଉଥିଲେ । ତା'ର ଅଧେଷ୍ଟତ ପାନ ପିକ । ଅଜଣା ଶବ୍ଦ ଗଣ୍ଡରେ ଅଫିସିଲ ସେ ତାଙ୍କ ବୁଦ୍ଧିଙ୍କୁ ଦେଖାଇବେ ବୋଲି ହେସଲ କରୁ କରୁ ସିଗାରେଟ୍ ଫିଙ୍ଗି ହାତରୁ ଖସିପଡ଼ିଲ । ପୁଣି ହାତ ବଢ଼େଇଲେ ଅଉ ସିଗାରେଟ ଅଛି ! ଖଣ୍ଡେ ଦିଅ ।"

ପୁଣି ସୋହହ'ର ଅବତାର ବଚନକା ହେଲେ ।

“ମୁଁ ତାହାକୁ ଘାସପତ୍ର ଲେଖା କହୁନାହିଁ କି ମତେ କେହି କୁଆଡ଼ୁ ଲେଖା କହେ ନାହିଁ । କହିଦେବେ ତାଙ୍କୁ, ମୁଁ ଡରେ ନାହିଁ, ମୁଁ ମହାପାତ୍ର । ମୋର ଯେତେ ଜାଣିଛି ମୁଁ ନିଜେ ସାଧୁଛି ସେଥିରେ ଅଛି ବର୍ତ୍ତମାନ ମୋର ଶ୍ରେଷ୍ଠ ଯଶ । ସୁତରାଂ ମୋର କୌଣସି କ୍ଷତି ତାଙ୍କ ଦ୍ୱାରା ଏ କରିପାରିବେ ନାହିଁ, ସେତ ସେ । ଗୁରୁଙ୍କୁ ହେଲ କଥା କହିଥିଲି । ଅନ୍ତ ଯେତେବେଳେ ଧନେକ ଦେଖାଇଲେ, ଲେଖିଦେଲ ‘କୌଟିଲ୍ୟ ଭାଗବତ’ ତାଇନାର ଲୀନଭକ୍ତ ପ୍ରେସରୁ ଛପା ହେଲା । ସେକ୍ସପିଅର ସାହେବ ନିଜେ ମତେ କହିଲେ ମହାପାତ୍ର ତୁମେ ଧନ୍ୟ । ମତେ ଖଣ୍ଡେ ସିଗାରେଟ୍ ଦେଲେ—ସେକ୍ସପିଅର ସାହେବ । ଗୁରୁ ମୋର କ’ଣ କଲ । ହଇଏ ? ସେମିତି ଉମେଶ ସାଙ୍ଗେ କଳି ଲାଗିଲା । ଚଳେଇଲି ଶଙ୍କରାଚାର୍ଯ୍ୟ ପଦ୍ୟାନୁବାଦ, ନାଁ କଲି—କ’ଣ ହେଲା, ହଇଏ ? ଲୋକେ ମତେ ଭଲ ପାଆନ୍ତି ନାହିଁ । କାରଣ ପ୍ରତିଭାସମ୍ପନ୍ନ ଲୋକ ପ୍ରବୃତ୍ତି ଏହିପରି ହୁଏ । ଲୋକଙ୍କ ମୁଣ୍ଡରେ ଗୋବର ଅଛି, ମୋପରି ଲୋକଙ୍କୁ ପ୍ରଶଂସା ଦେଲାଭଳି ତାଙ୍କର ବିଦ୍ୟାବୁଦ୍ଧି ନାହିଁ । ସେଥିପାଇଁ ମୁଁ କଣ କରିବ ? ବାଜେ ଦଶଜଣଙ୍କ ପ୍ରଶଂସାରେ ମୋର କି ଦରକାର ! ସେକ୍ସପିଅର ସାହେବ ମତେ ସିଗାରେଟ୍ ଦେଇଥିଲେ,—କହିଥିଲି କି ?”

“ନାହିଁ—”

“ଗୁରୁ ସଙ୍ଗେ କଜିଆ ଲାଗିଲା ବେଳେ, ଯେତେବେଳେ ସ୍କଲନାର ଲୀନ୍ ଭକ୍ତାଂ ପ୍ରେସ୍‌ରୁ ‘ମୋର କୌଟିଲ୍ୟ ଭାଗବତ’ ବାହାରିଲା, ସେକ୍ସପିଅର ସାହେବ ମତେ ବସେଇଲେ, ସିଗାରେଟ୍ ଦେଲେ, କହିଲେ ମହାପାତ୍ର ତୁମେ ଧନ୍ୟ । ମାର୍କେ ସାହେବ ଆଗରେ ବୋଧେ କହିଥିଲି, ମାର୍କେ ମତେ ପଚାରୁଥିଲେ, ତୁମେ କଣ ସେହି

ମହାପାତ୍ର ? ମତେ ଚାହିଁ ହସିଥିଲେ । ଆଉ କଣ ? ଶହକୁ ଶହ କଡ଼ାକ୍ରାନ୍ତି ଦେଖୁଚ, କଏ କ'ଣ୍ଟା କରିବ ? ହଇଏ ? ଇଂରେଜ୍ ଥିଲେ, ଲେଖିଥିଲି ତାଙ୍କ ଶାସନ ଚମତ୍କାର । କଂଗ୍ରେସ ଆସୁ ଆସୁ ଜପାବୃକ୍ଷ ବିଷୟରେ ବହିଲେଖିଦେଲି । ତାପରେ ଆଉସାହା ଯୋଜନା କରି ରଖିଛୁ ଥାଉକୁ ଥାଉ, ପରେ ତା ପ୍ରକାଶ ପାଇବ । ଯେ ଆସୁ ମୋର କ'ଣ୍ଟା କରିବ ? ଅନର୍ଗଳ କହିପାରେଁ, ଅନର୍ଗଳ ଲେଖି ପାରେଁ, ଅନର୍ଗଳ ଭାବିପାରେଁ । ଫାଷ୍ଟ ଥିଲି ଫାଷ୍ଟ ରହିଲିଛୁ, କଏ କ'ଣ୍ଟା କରିବ, ମୁଁ ମହାପାତ୍ର, ନା ନାଇଁ ?" 'ଅବଶ୍ୟ ଅବଶ୍ୟ—"

"ଗଳ୍ପବେଳେ ଗୁଓ କହିଦେଇଗଲେ·····ସେକ୍‌ସପିଅର୍ ସାହେବ ଲେଖିଦେଇଗଲେ ·····ମାନେ ସାହେବ କଣ କହିଲେ ଶୁଣିବେ—"

"ତା ନୁହେଁ କଣ ?"

"ଲୋକେ ଇଡ଼ିଅଟ୍, ଦୁନିଆଁ" ଇଡ଼ିଅଟ୍, ମୁଁ ବେଳେବେଳେ ଇଡ଼ିଅଟ୍—

"ସେତ ଠିକ କଥା—"

ମହାପାତ୍ର ଅଟକ ଠିଆ ହେଲେ, ଦେଖିଲି ମୁହେଁ ଗମ୍ଭୀର ହୋଇଗଲାଣି । ଆଉଥରେ ଖିଲେ ପାନ ମାଗିନେଇ ପାଟିରେ ଗୁଞ୍ଜିଦେଇ କହିଲେ "ଆପଣ ବେଶ୍ ଲୋକତ ? ଖମ୍ବଆଳୁ ବୁଝିଛନ୍ତି, ନୁହେଁ ? ସତେ କ'ଣ ମୁଁ ଇଡ଼ିଅଟ୍ ?"

କୋଡ଼ିଏ ଡିଗ୍ରୀର ବ୍ୟବଧାନ ଭିତରିରେ ପଡ଼ିଥିଲାଣି । ସାନ ଭଦ୍ରଲୋକଟି ପାପୁଲିରେ ପାପୁଲି ଘଷି ଝାଳେଇ ଥଙ୍ଗେଇ କହି ଲାଗିଛନ୍ତି "ଆଜ୍ଞା—ଅଜ୍ଞା—ଆଜ୍ଞା"

ଦୁର୍ଭାଗ୍ୟକୁ ତା ଉତ୍ତରୁ ତା ଉତ୍ତରୁ ତାଙ୍କୁ ଦଣ୍ଡବତ କରି

କବି ଘୁରି ମାମଜନ୍ତ କଏ ସେବାଟେ ଗଲେ, ସେମାନଙ୍କର ବାନସ୍ତୁ ଖାଇ ଫୁଲ ଫୁଲକା ମହାପାବେ ଗର୍ଜନ କଲେ, "ବୁଝିଲ, କପିଳେଶ୍ୱର ମହାପାତ୍ର କାହା ସ୍ତୋକବାକ୍ୟରେ ଭୁଲେ ନାହିଁ। ଆଜ୍ଞା—ଆଜ୍ଞା—ଆଜ୍ଞା—ମା ତମ୍ବ କୃଷ୍ଣା—ଇତ୍ୟାଦି—"

ଉଚ୍ଚର ହୋଇ ବାଁ ଗଳିବାଟେ ଘୁଲିଗଲେ, ମେଡା ବେଳ ଶୁଭୁଥାଏ ଠକ୍ ଠକ୍। ଷୁଦ୍ର ଭଦ୍ରଲୋକଟି ବକ୍ଷବୁଦ୍ଧ ହୋଇ ପଡ଼େ ପଞ୍ଚ ଧାଇଁଗଲେ ବ ଖୋଜ, ପୁଣି ଫେରିଆସିଲେ, ହାତ ବଟ ଉପରକୁ ଟେକ ହତାଶ ହୋଇ ଠିଆହେଲେ ଟିକଏ। ଦୂରରେ କପିଳେଶ୍ୱରଙ୍କ ପିଠି ଅଦ୍ଭୁତ ଆକ୍ରତ ମାନ ହୋଇ ଆସୁଥିବା। ଲମ୍ବା ଦୀର୍ଘଶ୍ୱାସରେ ମଣା ହୁନ୍ତୁଡ଼େଇ ହୁରୁଡ଼େଇ ଲେଉଟି ଘୁଲିଲେ। ବେଳ ସାମ୍ନା ଆଡ଼କୁ ବାର୍ଣ୍ଣ ହୋଇ ପଡ଼ିଥିଲ। ଖୋଜ ସମାନ ବ୍ୟବଧାନ ଥିବାର ଦଶୁ ନ ଥିଲ। ଦେଖିଲେ ଦୁଃଖ ଲଗୁ- ଥିଲ। ଯେପରି କ ଉନ ଯାକର ତପସ୍ୟାର ଫଳ ହଠାତ୍ କେଉଁ ଅଜଣା କାରଣରୁ ସେ ହରାଇ ସାରିଛନ୍ତି।

ଖାର ସ୍ୱପବ କହିଲ—"ଆମ୍ଭି ଥାଏ ଚ, ବୁଲୁବୁ, ଯିବା ପଛେ ପଛେ। ମୋର ଚହ୍ନା ଅଛି ଯେ! ବର୍ତ୍ତମାନ ଗାମୁଛା ବଦଳ ପକେଇ ବଖ୍ୟାତ ମହାପାତ୍ର ଟହଲ ଟହଲ ଗୁଡ଼ାଖୁ ଘଷୁଥିବେ, ଏତିକବେଳେ ଲଳ ସଙ୍ଗେ ସଙ୍ଗେ ପ୍ରଚୁର ବକ୍ତୃତା ବହେ। ଷ୍ଟେନୋ ଆଣେଇ ପଡ଼ ଡକ୍ଟେସନ୍ ନଏ। ସେ ବଡର ଏନ୍ତ ଗୁଡ଼ାଖୁ-ବକେ ଅବସ୍ଥା ପାଇଁ ବକ୍ତୃ ପାଣି କର ଅପେକ୍ଷା କରୁଥିବ। ଘୁଲ୍ ଦେଖିବୁ ଚାଲ୍। ଏ ଅବସ୍ଥା ପରେ ଆହ୍ୱମ ଚୌକିରେ ପଡ଼ ରହି ଅନୁପସ୍ଥିତ ସମସ୍ତଙ୍କୁ ଗାଳଦେବା ଅବସ୍ଥା, ବେଶ୍ ଅଦ୍ଭୁତ ଭାଷ, ଖାଣ୍ଟି ଓଡ଼ିଆ, ଶୁଣିବୁ ଚାଲ୍, ମନ୍ଦ ଲଗିବ ନାହିଁ। ଗାଳ

ଦେଇ ଦେଇ  ଅଧା ନିଦ  ଘୋଷିପିବ, ସେତେବେଳେ  କଳ୍ପିତ ଆଶା ଲହ ପରି ତାଙ୍କ ଆଖି ଆଗେ ଆଗେ ଝଙ୍କାହୋଇ ପୁଣି ବଦଳି ଲିଥିବ, ସତେ କି କାହା ଘର ପୋଡ଼ୁଛନ୍ତି, କାହାକୁ ଠେଙ୍ଗାରେ ପିଟୁଛନ୍ତି, ଗାତ ଭିତରେ ନିଆଁ ଜାଳି  ଫଟାପଟ କରି କାହାକୁ ଗଡ଼େଇ ଦେଉଛନ୍ତି  ତାହା ଉପରେ । କଳ୍ପିତ ଆଶାର ମୃଦୁ ମୃଦୁ ସାଙ୍କେତିକ ସ୍ୱର ଶୁଣିବୁ । ହାଁକ ହାଁକ କରୁ ଉତ୍ପାତ ଦେଲେ ବହୁତ ଲୋକଙ୍କୁ ଗାଳି ଶୁଣି ଆସିବୁ ବିନା ପଇସାରେ, ନୂଆ ଲୋକଙ୍କ ସଙ୍ଗେ ଚିହ୍ନା ହେବ, ବିଖ୍ୟାତ ମଣିଷ । ଯିବୁ ?”

ବିଖ୍ୟାତ ମଣିଷ—କଥାଟା ତଉଲୁଥିଲି ।

ହଠାତ୍ କହିଲି,—“ସ୍ତ ?”

ଖାରବେଳ ମୃଦୁ  ହସିଲା; କହିଲା,  “ମହାଜନମାନେ ଲୌକିକତାର ଧାର ଧାରନ୍ତି ନାହିଁ, ସୁତରାଂ ବିଦ୍ୟାର୍ଥୀମାନଙ୍କୁ ମୂଳରୁ ଉପଦେଶ, ଯେ ଆସିବ ବାବା ସେ ଆପଣାର ନିଜର ପେନ୍‌ସିଲ୍ ନିଜ କଲମ କାଗଜ ଘେନି ଘରେ ପଶିବ ।”

ଭାବୁଥିଲି, ଯିବି କି ନ ଯିବି ।

କିନ୍ତୁ ବେଳ ବଦଳିଛି । ସେମିତି ବେଳ, ଯେତେବେଳେ କାରଖାନାର ଶ୍ରମିକର ସ୍ତ୍ରୀ ଆଶଙ୍କା କରି ଅନେଇଁ ବସିଥିବ, ସ୍ୱାମୀ ମଦ ପିଇ ଆସି ବିଧା ମାରିବ କି ବ୍ଲପୁଡ଼ା ମାରିବ, ମାଲିକର ଘରଣୀ ଅପେକ୍ଷା କରିଥିବ, ପଡ଼ିଶାଘରର ସ୍ତ୍ରୀ ଆସୁଥିବ ପରଚର୍ଚ୍ଚା କରିବାକୁ, ସହରର କ୍ଲବ ବିସ୍ତୁରୁଥିବ, କରସିନ ନାହିଁ, ପଢ଼ା ହେବ କେମିତି, ଟିଉଶନ୍ ମାଷ୍ଟର ଭାବିବାକୁ ଆରମ୍ଭ କରୁଥିବ, ବାଟରେ ଅନର୍ଥକ ଘାଲ୍ ହାବୁଡ଼େ ପଡ଼ିଗଲା ପରି ନିଷ୍ଫଳା ବନ୍ଧୁ ହାବୁଡ଼େ ପଡ଼ି ବୋଟେଁ ବେଳ ଗଲା, ଗଦାଏ ବାଟ ବାକି ।

ଭାବନାର ବେଳ ସତ, ଗୀତ ଆସୁଛି ।

ତାର ଗଘବର ଡେଣା ଧରି ଝାଙ୍କି ଦେଇ ମୁଁ ବି କହିଲି, "ଚାଲ୍ ଆମର ଯିବା. ଏଣେ ଗ୍ରାଉ ପରି ବୁଲି ବୁଲି ଏତେବେଳ ଗଲା । ନଣ୍ଡକୁଳ ବରଗଛ ପାଖେ ଆମେ ଯେଉଁଠି ନିତି ବସୁ, ସେ ପିଣ୍ଡ୍ ଖଣ୍ଡିକ ଥିବ କି ନେକବ୍ର ମାଡ଼ିବସିଥିବେ କେଜାଣି ?"

ସେ କହିଲା, "ତାଲା ନାହିଁ, ମାଡ଼ ବସିଥିଲେ ବି ଗୀତ ବୋଲିବୁ, ସେମାନେ ଉଠି ପଳେଇବେ । କିନ୍ତୁ ବଡ଼ଲୋକମାନଙ୍କ ପିଣ୍ଡ ନେଲେ ନିଜର ଅନେକ ସୁଖସୁବିଧାରେ ଜଳାଞ୍ଜଳି ଦେବାକୁ ହୁଏ, ସେଇଟା ତୁ ଭୁଲି ଯାଉଛୁ ।"

"କି ବଡ଼ଲୋକ ?" ଗୁଡ଼ଭାବେ ମୁଁ କହିଲି, "ଆମେ କଣ କାହା ଚାକର ନାଁ କଣ ଯେ, କେଉଁଠି ଖଟୁଥିବୁ ?"

"କିଏ କହୁଥିଲା ?"

ଜବାବ୍ ଦେଲି ନାହିଁ । ଅନର୍ଥକ ରାଗ ଆସିଥିଲା । ହୁଏତ ଭାବୁଥିଲି ସେ ଷ୍ଟେନୋ ଭଦ୍ରଲୋକଙ୍କ ଦଶା, ଗୁଡ଼ାଖୁ ଘସୁଥିବା ଅଧ୍ୟକ୍ଷଙ୍କ ଭୃଣ୍ଡର ବେଦବାକ୍ୟ ଯେ ବସି ଲେଖି ପକାଉଥିବ, ତାହାରି କଥା । ସେ ମୂକ, ମୁଁ ମୂଖର, କିନ୍ତୁ ଯାହାକୁ ଶୁଣାନ୍ତି ସେ କାହିଁ ପାଖରେ ବାହାର ତ' ।

ନଣ୍ଡକୁଳରେ ନିତି ବସିବା ସ୍ଥାନରେ ବସିବାଲି ଅପେକ୍ଷାକୁ ଅନେଇଁ ରହିଲି । ସେଠି ଅନ୍ଧାର ପୂରିଛି । ମଝିରେ ମଝିରେ ଲନ୍ଟଣ ବାନ୍ଧି ଶଗଡ଼ଗାଡ଼ି ଗୋଟିକା ଗୋଟି ନଈଭିତର ବାଗ୍ସାକୁ ଗଡ଼ିଯାଉଛନ୍ତି । ଆଲୁଅ ମିଟି ମିଟି ହେଉଛି, ଘଣ୍ଟି ଶୁଭୁଛି । ଶାନ୍ତ ଲାଗୁଥାଏ । ଆପଣା ପ୍ରଶ୍ନର ଉତ୍ତର ଖୋଜୁଥାଏ,—କାହିଁକି ଏ ନାରସୀବାଘ ମୁଁ କାର ? ଲୋକେ କଣ ବିଶ୍ୱାସ କରୁଥିବେ ?' ତେବେ ଉଣପା ବାନ୍ଧି ଉଞ୍ଚ ହୋଇ ସଡ଼କ ମଝିରେ ଢୋଲ ପିଟି ପିଟି ନିଜକୁ ପ୍ରଚାର କରି କରି ଯିବାର ପନ୍ଥା କେଉଁଠି ?

ଭାବୁ ଭାବୁ ଶୀତଳଆ ଅନ୍ଧାରୁଆ କାଳି ଉପରୁ ତାର ଚେତନା ଭାସିଆସିଲା,—ଅଗଣିତ ଶ୍ରେଣିକ, ଘୋଷମଲ୍ଲ, ଦେଶପତି, ମହାପାତ୍ର, ଅମାତ୍ୟ ଏହି ଧୂଳିରେ ମିଶିଥିଲେ । ଫାଙ୍କ ଫାଙ୍କ ହୋଇ ଛଡ଼ା ନଆଁରେ ତାଙ୍କର ମୁଁ କାରର ଖୋଳ ଜଳିଯାଇଥିଲା । ଆଜି ସେ ନାହାନ୍ତି । ଏହି ବି ବିନିଆ ଉନ୍ମାଦ ବେଗର ପରିସମାପ୍ତି ହେବ । ଭୟ ନାହିଁ । ତା ପରେ ମେଘ ବର୍ଷିବ ।

“ହେଲେ ହେବ ସିନା, କିନ୍ତୁ ସେ ପର୍ଯ୍ୟନ୍ତ ?” ମନକୁ ପଚାରୁଥିଲି । ଭାବୁଥିଲି ସେହି ହତଭାଗାମାନଙ୍କ ଦୁଃଖ, ପେଣ୍ଠିମାନଙ୍କୁ ଏହି ମହାପୁରୁଷଙ୍କର ସୋଽହଂବାଦର କ୍ୟାନଭାସ୍ ଜୋତା ତଳେ ଗୁଞ୍ଜିତାଞ୍ଜି ହୋଇ ଚାଲିବାକୁ ପଡ଼େ ।

ସାର ସାଧକ କହିଲା, “ଏ ପବନରେ ବେଶି ବେଳ ବସିଲେ ନିଦ ହୋଇଯିବ, ଚାଲ୍ ଯିବା—” ଭାବୁଥିଲି ସେହିମାନଙ୍କ କଥା, ଶତାବ୍ଦୀ ଶତାବ୍ଦୀର ଝାଡ଼ଝଞ୍ଜା ଝଳଆ ପରି, ଯେଉଁ ଉଭେଇଗଲେ ମରୁ ନାହାନ୍ତି, ଲୁଚି ରହି ଆସିଛନ୍ତି କେଉଁ ଅନ୍ଧାରୁଆ କଣରେ । କଳା ବୁଢ଼ିଅଣୀ ପରି, ଅସରପା ପରି, ଆପଣା ଆପଣା ଆବର୍ଜନା ଉପରେ ଠିଆ ହୋଇ ଗର୍ବରେ ଚାରିଆଡ଼କୁ ଦୃଷ୍ଟି ପକାଇ ଗାଧ ମାଡ଼ି ରହିଛନ୍ତି ଏହି ଅହରହ ମୁଁ ପଣର ବ୍ୟାଣ୍ଡମାଷ୍ଟରମାନେ; ଥିଲେ, ଅଛନ୍ତି, ଭବିଷ୍ୟତକୁ ଲମ୍ବି ରହିଥିବ ତାଙ୍କ ପରମ୍ପରାର ଡୋର, ସବୁ ଯୁଗରେ ଲୋକ ଥିବେ କହିବାକୁ,—ମୁଁ—ମୁଁ—ମୁଁ ମହାପାତ୍ର—ଭ୍ରମର ବୋଲି କାହାକୁ ସ୍ୱୀକାର କରେ ନାହିଁ ମୁଁ ।

ଲୋଭ ସମ୍ବରଣ କରିପାରିଲି ନାହିଁ । ଆରମ୍ଭ ଥାଏ ରବିବାର; ସାର ସାଧକଙ୍କ ସଂଗରେ ଫେରି ଗଲି । ପଢ଼ିଦେଲୁ ଗଳ୍ପ, ଆମ ସାମ୍ବାଦିକ, ଯେ ଆସନ୍ତୁ ସଙ୍ଗୋଳ ଆସିବା ଆମ କାମ,

ସୁତରାଂ ଆମର ସମ୍ଥାନ ସବୁ ପଇସା ଦେଲା ପରେ ମଜୁରି ଦେବା ପାଇଁ—ଇତ୍ୟାଦ ।

ସାମ୍ବାଦକ ବୋଲି ଏକ ମିନଟ୍ ଭିତରେ ଘରକୁ ଉକଣ୍ ଆସିଲା, ଏଇକ୍ଷଣ ଘର ଭିତରକୁ । ବିଖ୍ୟାତ ମହାପାତ୍ରଙ୍କ ଘର, ଐତିହାସିକ ପାତ୍ରମନ୍ତ୍ରୀଙ୍କ ପରେ ସେ ଏ ଦେଶର ଜଣେ ବରିଷ୍ଠ କର୍ଣ୍ଣଧାର । କିନ୍ତୁ ସାଜସଜ୍ଜାରେ ପରିପାଟି ଆଦୌ ନାହିଁ । ପ୍ରଥମ ଦେଖବର ଚଟାଣରେ ପଡ଼ିଛି ଗୋଟିଏ ଅତଣ୍ଡା ଗାଲ୍‌ ଗ୍ଲଲ, ଝୁମ ନୂଆ ପୁରୁ ପୁରୁ—ନେହ୍ଭପର ଟଙ୍କା ଯାହା ମାଗଣା ମିଳିଲେ ଲୋକ ରଖିବାକୁ ଭାବପାରେ । ଆଉ ଘରେ ଖଣ୍ଡିଏ ସପ ପଡ଼ିଥାଏ, ଗୁଡ଼ାଏ ପିଲାଙ୍କୁ ଏକାଠି ବେଳାଇ ଜଣେ ମାଷ୍ଟର ବସିଥାନ୍ତି, ଆସନ-ବିନ୍ୟାସ ସବୁ ଦେଖିଲେ ଜଣାପଡ଼ିବ ଏ ବ ଖସ୍ତା ମାଷ୍ଟର । ତାଙ୍କର ଅଶାନ୍ତ ମୁହଁ ଉଦ୍ଧାମ ଆଖି ଯେପରି ନ ପ୍ରଚାର କରୁଛି, ମାରବାରେ—ଦଉମ. ଅଣ୍ଟେ ନାହିଁ । ଯେତେ କହିଲେ ଶୁଣିବେ ନାହିଁ, ଆପଣା ଦୁର୍ଭାଗ୍ୟ ମୁଣ୍ଡରେ ଲାଂଗୁଡ଼ ଜାକ ମୁଁ ଏଠି ପଡ଼ି ରହିଛି ଯେତେଦିନ ପାରେ । ଭିତର ଅଗଣା କଡ଼ରେ ଓସାର ପିଣ୍ଡା । ସେଠି ମୁଣ୍ଡ ଉପରେ ହରିଣ ଶିଙ୍ଗ ମଣ୍ଡିଛି, ତଳେ କେତେ ଖଣ୍ଡ ଚୌକି, ବଡ଼ ପିକଦାନ ପାଖେ ବସିଛନ୍ତି ଜଣେ ଖାଲି ଦେହ ପଣରେ ସୁପ୍ତି ଲୁଦୁଲୁଦୁ, ଛଉ କା ଲୁଙ୍ଗି, ସେ ମହାପାତ୍ର । ଭିତର ଘରେ ଶ୍ରେଷ୍ଠ ପଦାର୍ଥ ଖଣ୍ଡିଏ ଡ୍ରେସିଂ ଟେବୁଲ୍, ତାର ବକୃତ ଆରସିରେ ପିଣ୍ଡାରୁ ମୁହଁସବୁ ଦିଶୁଛି କଡ଼ ବଙ୍କ, ଫୁଲିକା, ଚେପଟା । ମହାପାତ୍ର ଖାତା ଖଣ୍ଡିଏ ଓ ମୁଣ୍ଡା ପେନ୍‌ସିଲ ଧରି କଳା ଫ୍ରେମର ଚଷମା ପିନ୍ଧି ବସି ଦୂର ଆରସିରେ ମୁହଁର ଗମ୍ଭୀର ଭାବ ଦେଖୁଛନ୍ତି, ବେଳେ ବେଳେ ତଳକୁ ଚାହୁଁଥାନ୍ତି ସେଠି ଆଣ୍ଠେଇ ପଡ଼ି ... ... ... ନଜୁର ଖୋଲି ଧରି ଆତଙ୍କିତ ମୁହଁରେ

ଜଣେ ଯୁବକ, ଦେଖେ ଖଣ୍ଡ, ବାଇ ସାଣ, ସବୁ ଆଉ ସମୁଦାୟ ଥାଏ
ଅଡ଼ରେ ମେଷ୍ଟା ମେଷ୍ଟା କରି ଅଲଗା ଅଲଗା ଜୁଟିରେ ବେଶ
ପୁଣି ଏକାଠି କରୁଛୁ । ପାଖରେ ଆଶ୍ରମ କୌଚରେ ଜଣେ
ମହିଳା ଡକ୍ ଡକ୍ କରି ଧୂ ପିଉଛନ୍ତି । ବୁଝିପାରିଲି ଏ ଆଶ୍ରମ
ବଶିଷ୍ଟ ସମ୍ମାନ । ଏକାବେଳକେ ନିଭୃତ ଆଳାପ ମଝିକୁ । ଭଦ୍ରଲୋ
ଫୁଟିଲା ପରେ ନମସ୍କାର ପ୍ରତିନମସ୍କାର ସରିଗଲା । ମୋ ଆଡ଼କୁ
ମୂହଁ ବୁଲେଇ ସେ ହସି ହସି କହିଲେ," – ମୁଁ ମହାପାତ୍ର – ମୁଁ "
ବସ୍ କରି ଖାରବ୍ଧକ ଆଡ଼କୁ ଚାହିଁଲେ, କହିବା ଉଦ୍ଦେଶ୍ୟ—ବାକି
ପରିଚୟଟା ଯେପରି ସେ ଦେଇଦିଏ । ଖାରବ୍ଧକ ତତ୍କ୍ଷଣାତ୍
କହିଲା, "ଏ ଜଗଦୀଶ ବାବୁ, ନାଁ ଶୁଣିଥିବେ ତ,—ସାମ୍ବାଦିକ,
ଆପଣ ଆସିଛନ୍ତି ଶୁଣିପାରି ଦେଖାକରିବାକୁ ବଡ଼ ଆଗ୍ରହ
ଦେଖାଇଲେ—"

ପିକଦାନରେ ଧୂଁକନା ଶବ୍ଦ ହେଲା, ଉଦାର ହସଟିଏ ହସି
କଳା କଡ଼ବ ଦାନ୍ତରେ ସେ ଯଥାସାଧ୍ୟ ମତେ ଆଲୋକିତ କଲେ ।
ଖାତା ଉପରେ ପାନବୋଳ ଲଣ୍ଡିଏ ପଡ଼ିଗଲା, ତାକୁ ଆଙ୍ଗୁଠିରେ
ଅତି ଯତ୍ନରେ ଏମୁଣ୍ଡ ସେ ମୁଣ୍ଡ ଘଷିଦେଲେ, କହିଲେ—

"ଜବ. ସାମ୍ବାଦିକ, ଲେଖକ, ଏମାନେ ମୋର ଅତି ପ୍ରିୟ,
ସେମାନେ ମୋର ହୃଦୟର ବନ୍ଧୁ, କାରଣ ସେମାନେ ଉପକାର
କରନ୍ତି, କେବଳ ବସି ଖାଆନ୍ତି ନାହିଁ । ସେହି କଥା ମୁଁ
ସେକ୍ସପିଅର ସାହେବଙ୍କୁ କହୁଥିଲି ସେଦିନ । ବିପନ୍ନ ଅଞ୍ଚଳରେ
ଲୁଗା ବାଣ୍ଟିଲି ଦିନ । ମୋର ଭିତରେ କାହାର ସବୁ ସମାନ, ସବୁ
ଲଙ୍ଗଳା ପୁଙ୍ଗୁଳା, ଭଗବାନଙ୍କ ସୃଷ୍ଟି ଲଙ୍ଗଳା ସତ୍ୟ । ମତେ
ଲୋକେ ଭୁଲ୍ ବୁଝନ୍ତି, କିନ୍ତୁ ମୁଁ ନିଜକୁ ବଦଳେଇବାକୁ ଚାହେଁ
ନାହିଁ । ମୁଁ କେବଳ ବୁଦ୍ଧିର ବଳକୁ ସ୍ୱୀକାର କରିବାକୁ ରାଜି,

ଆଉ କିଛି ନୁହେଁ । ସା'ଓ ସଙ୍ଗରେ ଯେତେବେଳେ ମୋର କଳିଆ ଲାଗିଲା— ସେହିକଥା ବୁଝେଇଥିଲି ସେଇଠାକୁ..."

ହଠାତ୍ ଚିତ୍କାର କରିଉଠିଲେ ଆଗ୍ନମ୍‌ଟେରୀକ ଆଣ୍ଡ୍ରୁ— "ହେଇ ହେଇ ଭୁ ଉଠ ନାଁ—ମୁଁ କହୁଛି—ଭୁ ରହିଯା "

କେତେବେଳୁ ଅନୁଭବ କରୁଥିଲି ଆଗ୍ରମଟେରୀକ ଆଣ୍ଡ୍ରୁର' ପିଜି ପିଜି ଧୂଳିଆ ଅଣ୍ଡା ଆଖିର ଦୃଷ୍ଟି ଛୁଞ୍ଚମୁନ ପରି ମତେ ଫୋଡ଼ି ଫୋଡ଼ି କରି ଲାଗିଛି । ଫାଙ୍କା ଚଉକରେ ଲାଗିଥାଏ ବୁଢ଼ିର ତଳ କୁଆଁକୁଆଁ, କାରଣ ଏ ଘରେ ପକ୍ଷୀ ପଶୁ ବୁଝିପାରୁଥିଲେ, ପିକଦାନ ପାଖ ମୁଁ କାରର ସବୁ ଗ୍ରାମୋଫୋନ୍ ରେକର୍ଡ଼ ଏ ଘରର ବଡ଼ତ୍ୱର କାରଣ ନୁହେଁ, ଏଠି ପାଶ୍ଚାତ୍ୟକାଶ ଗ୍ରହପର ଏହି ଶାନ୍ତ ମାତୃମୂର୍ତ୍ତି । ଆଧୁନିକ ଓ ପ୍ରାଗୈତିହାସିକର ଅଦ୍ଭୁତ ସମନ୍ୱୟ ।

ମହାପାତ୍ର ବ୍ୟାଖ୍ୟାନ ଦେଉଥାନ୍ତି, "କଣ କହୁଥିଲି,—ହଁ, କୌଟିଲ୍ୟ ଚାଣକ୍ୟ ଠିକ୍ ସେତିକିବେଳେ ଲେଖିଥିଲେ "

ମୁଁ କହିଲି—"ଆଜ୍ଞା ହଁ, ସେହି ସା'ଓଙ୍କ ସଙ୍ଗେ କଳିଆ କଲାବେଳେ,—ଉତ୍ତେଜିତ ହୋଇ ଚଉକିରୁ ଅଧା ଉଠି ଅଧା ବସି ସେ ବକ୍ତୃତା ଦେଲେ, "ଠିକ୍ କହୁଛନ୍ତି—ଠିକ କହୁଛନ୍ତି । ସେଇଠା କଣ କଲ ମୋର ? କହୁଥିଲ, ମତେ ଧ୍ୱଂସ କରିବ, ମୁଁ କହୁଥିଲି ଆପଣା ଭାଗ୍ୟ ଛଡ଼ା ଆପଣାକୁ ଧ୍ୱଂସ କରିବାକୁ ହକ୍‌ଦାର ଆଉ କେହି ନୁହେଁ । ସେ କହୁଥିଲ… …ମୁ କହୁଥିଲି… କହୁଥିଲି ଯେଉଁ ଭାଗ୍ୟବଳରୁ ଗାଈ ଜଗୁଆଳ ହେବା ଲୋକ ମୁଁ ଏତେ ପାହାଚ ଡେଇଁ ଏତେ ଉପରକୁ ଉଠି ପାରିଛି । ଏତିକରେ ନୁହେଁ, ମୋର ଯାତ୍ରାର ଶେଷ—ଆହୁରି ବାକି ଆହୁରି ବାକି—"

ଏକା ନିଶ୍ୱାସରେ କହିଯାଉଥାନ୍ତି ସେ, କହୁ ନ ଥାନ୍ତି, ଦେଶବାସୀଙ୍କୁ ଭାଷଣ ଦେଉଥାନ୍ତି ।

କାରଣ, ବୋଧହୁଏ ମୁଁ ସାମ୍ବାଦିକ ।

ଅଥବା ଏହିପରି କହିବା ହିଁ ତାଙ୍କର ଅଭ୍ୟାସ ।

"ସେ କହିଥିଲି - ମୁଁ କହିଥିଲି,—ଇତିହାସର ସ୍ମରଣୀୟ ପୃଷ୍ଠାଟିଏ ପରି । ସେ ଅନୁମାନ କରୁଥିବେ, ସାମ୍ନାରେ ମାଇକ୍ରୋ-ଫୋନ୍, ଟେଲିଭିଜନ ବା । ସେ ଆଦର୍ଶ ଥିଲି ହୁଏତ ହବେ, ଆଜି ଯୋଗ୍ୟ ଉଭେଇ ଯାଉଛି, ତେଣୁ ଏହିପରି ବନ୍ୟାସ ତାର ସୁଲଭ ସଂସ୍କରଣ । ମୁଁ ଜାଣିଥାଏଁ, ସେ କହୁଥାନ୍ତି । ମୋର ଆଖି ଆଗରେ ବର୍ତ୍ତମାନର ସବୁ ସ୍ଥୂଳତା ଅଣଜଟି ହୋଇ ଦୂରକୁ ଘୁଞ୍ଚିଯାଉଥାଏ, କାନପାଖେ କିଏ ଗର୍ଜନ କରୁଛି, "ବ୍ରାଭୋ ବ୍ରାଭୋ,—ତୁମକୁ ମନ୍ତ୍ରୀସ୍ତ୍ରେ ଧନ୍ୟବାଦ । ସେହି କଳଆ ଫଳରେ ଆପଣାର ବ୍ୟକ୍ତିତ୍ୱର ପରିଚୟ ଦେବା ଲାଗି ମୁଁ ଲେଖିଲି କୌଟିଲ୍ୟ ଭାଗବତ, ଆଜି ନ ହେଲେ, ଭବିଷ୍ୟତରେ ସେ ଜଗଦ୍ବିଖ୍ୟାତ ହେବ ଏଥିରେ ସନ୍ଦେହ ନାହିଁ"

—"ଆଖିରେ ଦେଖୁଛି ଭିନ୍ନ ରୂପ---ସେହି ଟିଙ୍ଗା ଛବି, ଦୁନିଆଁକୁ ଭ୍ରୂକ୍ଷେପ ନ କରି ଜଣେ ଚାଲିଛି, ମାଛହାଟ ଭିତରେ,—ଗହଳି ବଜାର ଭିତରେ,—ମଣିଷ ହାଉ ହାଉ କରନ୍ତି ପାଖ ବରଗଛ ତଳେ—ଫୁଟ୍‌ବଲ୍ ମ୍ୟାଚ୍ ପାଖେ, ଆପଣାକୁ ପ୍ରକାଶ କରି କରି ଚାଲିଛି—"ଅସଲ ପଞ୍ଚଗୁଣା ତେଲ । ମୁଁ ପଞ୍ଚଗୁଣା—ମୁଁ ବହୁଗୁଣା—ମୁଁ ଅସଲ—"

କିନ୍ତୁ କଳ୍ପନାରେ ବାଧା ପଡ଼ିଲା । ହଠାତ୍ ସେ ଶାନ୍ତ ନାଟମୂର୍ତ୍ତି ପରିଚି ଉଠିଛନ୍ତି । କେଉଁଠି କପଟ ଛପି ରହିଛି ସେଠି ଉଦ୍‌ବିଗ୍ନତା, ବାରି ହେଉଛି, ଜଣା କରି ହେଉନାହିଁ । ମୁହଁ ଭାବଶୂନ୍ୟ । ଧୀରେ ଧୀରେ ଚାଲି ଆସୁଛନ୍ତି । ସମ୍ମାନ ଦେଖାଇ

ଉଠି ପଡ଼ିଲୁ ଦୁହେଁ । ବକ୍ତୃତାରେ ବାଧା ଉପୁଜାଇ ସିଗାରେଟ୍ ଡବାଟିଏ ବଢ଼ାଇ ଦେଇ କହିଲେ "ଗୁଣ୍ଡିପାନ ।" ଠିଆହୋଇ ହାଇ ମାରିଲେ । ତେବେ ଏଇ କଣ ଶେଷ ? ଏଣିକରେ ଫେରି-ଯିବାକୁ ପଡ଼ିବ ! କିନ୍ତୁ ମହାପାତ୍ର ବ୍ୟସ୍ତ ହୋଇ ଚିତ୍କାର କଲେ—"ଆପଣମାନେ ବସନ୍ତୁ । ଯାଉନ୍ତୁ ନାହିଁ ବସନ୍ତୁ ।"

ମୁଁ ଓ ମୋର ବନ୍ଧୁ ମୁହଁ ଚାହାଁ ଚାହିଁ ହେଲୁଁ । ହସିବାକୁ ଅବକାଶ ମିଳନା ।

ଶାନ୍ତମୂର୍ତ୍ତି ହାଣ୍ଡିପାଣି ଘର ଭିତରକୁ ଚାଲିଗଲେ । ଅଭ୍ୟାସ ତାଙ୍କୁ ଭାଗ୍ୟକୁ ମୁଣ୍ଡ ନୁଆଁଇବା ଶିଖେଇଥିବ । ମହାପାତ୍ର ପୂର୍ବର ତାନ୍ତ ଫେରାଇ ଆଣି ଆରମ୍ଭ କରିଥିଲେ । "ଏଇ ଦେଖନ୍ତୁ, ସ୍ତ୍ରୀଲୋକ,—ସେମାନେ ମୂର୍ଖ, ବୁଦ୍ଧିର ତଥ୍ୟ ତାଙ୍କ ମୁଣ୍ଡରେ ପଶେ ନାହିଁ । ତେବେ, ଦୁନିଆରେ ମୂର୍ଖ ଅଧିକ,—" କହୁଥାନ୍ତେ ହୁଏତ, ସଂସ୍କାରବାନ୍ ପ୍ରବନ୍ଧ ଢଙ୍ଗୀରେ ଯେ "ପରମ୍ପର ପରମେ-ଶ୍ୱର ପଶୁପକ୍ଷୀ ସମସ୍ତଙ୍କୁ ସୃଷ୍ଟି କରିଛନ୍ତି, ସୃଷ୍ଟି ମଧ୍ୟରେ ମନୁଷ୍ୟ ଗୋଟିଏ ଦ୍ୱିପଦ, ସେମାନଙ୍କ ମଧ୍ୟରେ ପୁଣି ··· ···"

କିନ୍ତୁ ପୁଣି ବାଧା,—ଚାକର ବସ୍ତୁତ ଟେବୁଲ ତଳେ ଅପେକ୍ଷା କରି ବସିଛି, ପାଟିକଲା "ହଜୁର, ଛୁଟେଇ ଦେଲେ ମୁଁ ଯାଇଥାନ୍ତି—"

"ଶ୍ରେୟାଂସି ବହୁ ବିଘ୍ନାନି, ତସନ୍ତୁ ଟିକିଏ—"

ହାତ କୁଣ୍ଡେଇବା ବାହାନାରେ ଘଣ୍ଟା ଦେଖି ସାରି-ଲଣି । ଯାଉତ୍ତ ନଅଟା । ସେହିବେଳ ଯେତେବେଳେ ଶ୍ରମିକ ଘରେ ଖରା ସଙ୍ଗେ ସଙ୍ଗେ ଘରର ଅନ୍ଧାରର ବଢ଼ୁଛି । ସମ୍ନାରେ ଦିନ ଗୋଟାକର କାମ, କାମହୀନ ଧମକ ଭାବେ, ସାମ୍ନାରେ ଅର୍ଦ୍ଧ କିହିନ ମାଇପ ଦିନ ଗୋଟାଏ, ସେହିବେଳ ଯେତେବେଳେ

ଆମଣାର ପରସ୍ଥିତ ପଣ୍ଡିତ ବରକ୍ତ ସମସ୍ତେ, ଗ୍ରବଦାରେ ସମତା ଭୂଇଁରେ ଗୋଡ଼ ଘୋଷାରଲଣି । ଆଉ ଗୁଡବ ଗୋଟାକ ଉପରେ ଗୋଟାଏ କଣ୍ ପାନ ଚୋବେଇ ଗ୍ଳଲଛୁ, ମହାପାତ୍ର ସେଠି ଲମ୍ବା ଖାଟରେ ବୁଡଛନ୍ତି । ମୁଣ୍ଡା ପେନ୍‌ସିଲ କାମ କରୁଛି, ତାର କାମୁଡ଼ା ଅଗର ହଳଦିଆ ଭଗ୍ନାଂଶ ପାନ ମଣିଷ ପର ମୁଣ୍ଡ ଟଙ୍ଗାରୁଛି, ହଲୁଛି, ହଠାତ୍ ମହାପାତ୍ର ଗର୍ଜନ କଲେ

"ଶଳା—"

ଚମକ ପଡ଼ ଗ୍ଳହିଁଲୁ । ଭ୍ରୂଭଂଗ ଦେଖାଇ ଗର୍ଜନ କଲେ "ମୋ ସାଙ୍ଗରେ ଫାକି ? ହିଁ ? ଥଙ୍କା ପଡ଼ୁଛୁ ? ବାହାରକର ପଇସା ଟା, ବାହାରକର, ଖୋଲ୍ ତୋ କସ୍ତ—"

"ଆଜ୍ଞା—"

"କହୁ ନାଇଁ, କହୁ ଶୁଣିବ ନାହିଁ—"

ଡର ଡର ଗ୍ଳକର ପଇସାଟିଏ ତାଙ୍କ ହାତକୁ ବଢ଼େଇ ଦେଲ । ମହା ଉଲ୍ଲାସରେ ରବ କଲେ "ମୁଁ ଜାଣିଚ—ମୁଁ ଜାଣିଚ ଖଡ଼ା ଦଅଣାର, ଳଙ୍କାମରଚ ଗ୍ଳ ପଇସାର, ଇଡ଼ଅନ୍ ବାଇଗଣ ଛ ପଇସା ଷୋଳଷ ପଇସା କଉ—ଗଲ କୁଆଡ଼େ ବାକ ଗୋଟାଏ--"

"ଆଜ୍ଞା ଷୋଳଷ ଦୁଇ—"

"ଫେର୍ କଥା କହୁଚୁ - ଯା ଗ୍ଳକ୍—"

ମୁଣ୍ଡପୋତି ଭୁନହୋଇ ଗ୍ଳକର ଭିତରକୁ ଗ୍ଳଲଗଲ, ତାର ବଙ୍କା ଦେହଟା ମାରକ ପ୍ରତିବାଦର କରୁଣ ବବୃତ୍ତି କହିଦେଇ ଯାଉଛି । ଯେମିତ କ କହିବାକୁ ଚାହେଁ "ଯଦ ମୋର ମୂର୍ଖ ବାପ ତମଠୁଁ ଚଢ଼ା ସୁଧରେ ଟଙ୍କା କରଜ ନେଇ ମୋର ମୁଣ୍ଡ ଖାଇ ନ ଥାନ୍ତା - "

ମହାପାତ୍ର ବୁଝାଉଥାନ୍ତି—"ଦେଖନ୍ତୁ, ପଇସାଟିଏ ନୋଇଲ ଅଗତ୍ୟା କଲେ ଚଳିବ ନାହିଁ, ସାଧାରଣ ମଣିଷ ଇଏ ଅଛି । ନ ଦେଲେ ସେ ପ୍ରଶ୍ନ ପଚାରନ୍ତା', ପଇସା କଣ୍, ସେ ଖାଲି ତମ୍ବା ପଇସା ନା ଆଉ କିଛି । କୌଟିଲ୍ୟ ଭଗବାନ ଦେଇଛନ୍ତି—ଦେଖିବେ ଷୋଡ଼ଶ ଅଧ୍ୟାୟ ନବମ ଶ୍ଲୋକରେ ମୁଁ କଣ ଲେଖିଛି ସେ ବିଷୟରେ, ମୁଁ ଲେଖିଛି—"

କିନ୍ତୁ ପୁଣି ବ୍ୟାଘାତ । ଉପଯୁକ୍ତ ସମୟରୁଁ, ଅଧିକା ଘଣ୍ଟାଏ କାଳ ପଢ଼େଇ ସାରିବା ପରେ ମାଷ୍ଟେ ଚାଲି ଗଲେଣି – ପିଲାମାନଙ୍କ କୋଳାହଳ । ଶ୍ଲୋକର ଦୁ'ଧାଡ଼ି ଗାଇ ଗାଇକା ପିଲାଟିଏ ଆସୁଛି । ମହାପାତ୍ର ଆପଣା ଜଘରେ ଚଟୁଆ ମାରି ଚତ୍କାର କଲେ, "ଶୁଣନ୍ତୁ ଶୁଣନ୍ତୁ, ସେ କଣ ଗାଉଛି, ମୋର ଶ୍ଲୋକ, ମୁଁ ରଚନା କରେଁ ମୋ ପିଲାଏ ବୋଲନ୍ତି । ସେଥିପାଇଁ ସେମାନଙ୍କ ସ୍ୱାସ୍ଥ୍ୟ ପାଇଁ ଔଷଧ ମୋଦକ ତିଆରି କରେଁ ମୁଁ, ତାଙ୍କର ଜାତକ, ଦଶା ସବୁ ମୁଁ କରିଛି—" ଉତ୍ତେଜିତ ହୋଇ କହିଗଲେ "ଆଧୁନିକ ଦୁନିଆଁରେ ସ୍ୱାବଲମ୍ବନଶୀଳ ହେବାକୁ ପଡ଼ିବ—ଅର୍ଥଶାସ୍ତ୍ରର ସ୍ୱତ୍ତ୍ୱ ସ୍ୱାବଲମ୍ବି ଗଢ଼ିବାକୁ ପଡ଼ିବ ଯୋଜନା । ସତ କହିଲି—ଆରେ ବାବା ବଦହେଲ୍ କାହିଁକି – ଗା-ଗା –ବାବାରେ—"

ଅତ୍ୟଧିକ ଆଗ୍ରହ ଦେଖି ପିଲାଟି ପଳେଇଲା । ସ୍ୱବାଳି, ବହୁତ ହେଲାଣି, ଉଠିପଡ଼ି ଗଦ୍‌ଗଦ ହୋଇ କହିଲି "ଆଜ୍ଞା ବହୁତ ଧନ୍ୟବାଦ । ଅନେକ ସମୟ ନଷ୍ଟ କଲେ ସେଥିପାଇଁ ଅଜସ୍ର ଧନ୍ୟବାଦ । ଆପଣମାନେ ସମାଜର ଶୀର୍ଷସ୍ଥାନରେ । ଜନସାଧାରଣଙ୍କ ପ୍ରତି ଏପରି ସହୃଦୟତା ସମସ୍ତେ ଦେଖାନ୍ତି ନାହିଁ—"

"ଆରେ, ଆପଣ ଚାଲିଲେ କି ? କଣ ସାର ରଘୁବାବୁ, ଏତେ ତରବର"—ମୋର ହାତ ଚିପୁଡ଼ି ଅନ୍ତରଙ୍ଗତା ଦେଖା

କହିଲି "ଯାହାହେଉ, ମୁଁ ଅସୁସ୍ଥ ହେଲି, ଅନ୍ତତଃ ମୁଁ ଆପଣଙ୍କୁ ଇଣ୍ଟରଭ୍ୟୁ କରିବି ନାହିଁ—" ମୋ ମୁହଁକୁ ଅନେଇ ଟିକଏ ହସି ଦେଲେ, କହିଲେ "ଅଛି,—ଦେବେ ପାନ ଖଣ୍ଡେ—"

ଏତେ ବଡ଼ ମନୀଷୀଙ୍କର ଏତେ ଦାମୀ ବଖତଟା ଅର୍ଜନ କରି-ଟାକୁ ମୁଁ କଣ କରୁଛି, ଭାବି ପାରିଲି ନାହିଁ। ସେ କହୁଛନ୍ତି, ମୁଁ ମରଣରେ ସହୁଛି। ସେ କଷ୍ଟ ଦେଉଛନ୍ତି, ମୁଁ ଠାଳି ଯାଉଛି। ସନ୍ତୁଷ୍ଟ ମନର ଗୋଟାଏ ରୋଗ। ଅନ୍ୟାନ୍ୟ ରୋଗଗୁଡ଼ିକୁ ନଇବାକୁ ରାସ୍ତାରେ ସମୟ ମିଳିବ। ଦୁଇ ପାଦୁଣ୍ଡ ଆସିଗଲେ। ସେ ଚମକି ପଡ଼ିଲେ, କହିଲେ "ଆରେ ଆରେ, ଅପର୍ଣ୍ଣ ମୋ କୌଟିଲ୍ୟ ଭାଗବତ ଦେଖିଲେ ନାହିଁ ତ!" ଘରଭିତରକୁ ଯାଇ ବହିଖଣ୍ଡେ ଆଣି ହାତକୁ ବଢ଼ାଇ ଦେଲେ, କହିଲେ "ଏଇଠି ଦେଖି ନିଅନ୍ତୁ ଘରକୁ ନେବେ ନାହିଁ। ମୋଠି ଏହି ଖଣ୍ଡିକ ଅଛି। ଅନେକ ସମୟରେ ଦେଖିବାକୁ ଦରକାର ପଡ଼େ କି ନା—" ପୁଣି ମୋ ହାତରୁ ଛଡ଼ାଇ ନେଇ ନିଜେ ପୃଷ୍ଠା ଗଡ଼ଉଥିଲେ, ମୁହଁରେ ଘୋଟିଗଲା ଗୋଟିଏ ଗାଢ଼ ମୋହର ଆଚ୍ଛନ୍ନତା, ସେ ଭୁଲିଗଲେ, ସମୟ ବହିଲଣି, ସେ ଠିଆ ହୋଇଛନ୍ତି—ଆମେ ଠିଆ ହୋଇଛୁଁ। ସମସ୍ତ ଠିଆହୋଇ ରହସ୍ୟ ଦେଖୁଛୁ।

ପୁରୁଣା ଟେବୁଲର ଖୋଲା ପିଠି ଫାଙ୍କରେ ଖରା ଦାଉ ଦାଉ ଜଳିଲଣି। ଘର ଭିତରର ଆଲମିରାର କାଚ ଢଳ ଢଳ ଆଲୁଅ। ଦୂରରେ ପିଲାମାନଙ୍କ କୋଳାହଳ ଶୁଭୁଛି, ରାସ୍ତାରେ ମଟର ଶବ୍ଦ। ଭିତରୁ ପାଟି ଶୁଭିଲା ଦୁଇଥର ଫୋନ କରି ତମକୁ ଖୋଜି ସାରିଲେଣି, ଆଜି କଣ କାମ ନାହିଁ?"

ବହି ଉପରୁ ମୁହଁ ଟେକିଲେ, କହିଲେ "ଦେଖିଲେ, କେମିତି ହେଉଛି? ଅବଶ୍ୟ ଏକଥା ସତ ଯେ ବହିଟି ବଞ୍ଚିବାକୁ ହେଲେ

ନଜର ଯଥେଷ୍ଟ ବନ୍ଧ ପଡ଼ାଥିବା ଦରକାର । ନଜର ଯାହାର ବଦ୍ୟା ନାହିଁ ସେ କି ବୁଦ୍ଧି ବଚ୍ଚଦ୍ୱାନ୍ ବନ୍ଧ ? କହିଥିଲ ଆପଣଙ୍କୁ ସେକ୍ସପିଅର ସାହେବ୍ କେତେ ଖୁସି ହୋଇଥିଲେ ? କାହାରକୁ ପାଖରେ ପୃଥକ୍ତ ନାହିଁ ମତେ ସର୍ଟିଫିକେଟ୍ ଦେଇଥିଲେ—"

"କଣ ? କହୁଚ ? ଯିବନାହିଁ ? କାନ ନାହିଁ ଆଜ ?

ଆହୁର ଥରେ ବଦାହୋଇ ଦାଣ୍ଡଘର ଆଡକୁ ମୋହିଁଲୁଁ ସେ କହି ଆସୁଥିଲେ ମୁଁ ଯଦ ସାମ୍ବାଦକ ହୋଇଥାନ୍ତି ତେବେ—

କନ୍ତୁ ବାରବାଟ ମୋହିଁଲଣି ଠିକ୍ ଦୁଆର ମୁହଁ ପାଖକୁ ମୁଁ ହେଲାଣି ଭାଲୁଗ୍ଗଲ ମଝିରେ । ଭିତରୁ ତାଙ୍କର କେଁପସ୍ୱର୍ ଶୁଭୁଥାଏ—"ଆରେ, ଜାଣନାହିଁ ତୁମେ, ମୁଁ ବାରମ୍ବାର ବୁଝେଇଚ, ମୁଁ ଏତେ ସମୟ ଯେ ଖର୍ଚ୍ଚ କଲି, ତାର କଣ ଉପକାର ମିଳବ ନାହିଁ ଭାବଚ ? ସେମାନେ କ ଧାରଣା ନେଇ ଯାଇଥିବେ ? ମଣ୍ଡ ପାଣ୍ଡ—ଏତେ ବଡ଼ ଲୋକ-ତଥାପି କ ଅମାୟିକ-କ ବୁଦ୍ଧିମାନ୍ ସବୁ ମୋର ଇଂ ରେଜ ପ୍ଳାନ-ଚଳନାଟା ବୁଝିବ ତୁମେ—"

ଆପଣା ବୁଦ୍ଧିକୁ ତାରିଫ୍ କରୁ କରୁ କହିବ ଆହୁର କଛ ବେଳ ଶୁଣି ବକ୍ତୃତା,—ଆହୁର ବକ୍ତୃତା—

ଗ୍ରାମଫୋନ୍ ରେକର୍ଡ଼ ବାଜ ଲଗିଥିବ ।

ରାସ୍ତାରେ ଭିଡ଼ ଲଗିଛି, ସହରର ଧକାଧକ ଠେଲାପେଲ ନନ୍ଦଧନର ଜୀବନ ଯାତ୍ରାର ପ୍ରଥମ ଅଧ୍ୟାୟ । ଶକଟ। ଟଛକୁ ଶକଟ। ଦୌଡ଼ୁଛି, ଗାଡ଼ ଟଛକୁ ଗାଡ଼ । ଝଣ୍ଟେ ତୁଚ୍ଛ ଟଛ ଅଟେ ସେହି ବଡ଼ ଘରଟା, ସେଠି ମୁଁ କାହରେ ବା ମ'କାରେ ଜୀବନ୍ତ ପ୍ରତିମା, ତାର ଦୃଷ୍ଟି ଆପଣା ଠେଇଁ ବନ୍ଧା, ଅଟକ ନାହିଁ, ଟଛକୁ ନାହିଁ । ତଥାପିଚ, ଏହି ବାସ୍ତବ ଦୁନିଆଁରେ ତାର ବ ସ୍ଥାନ ଅଛି, ଏହି ଦୁନିଆଁ ତାଙ୍କୁ

ଗଢ଼ିଛୁ, ଏଇ ଧୂଳିରୁ ଏଇ ଆଲୁଅରୁ ସେ ଉପାଦାନ ପାଇଛୁ ଆପଣାର ସ୍ୱାର୍ଥପରି ସ୍ୱପ୍ନର ବିଗ୍‌ରହକୁ ବଢ଼ାଇବାକୁ ।

କିନ୍ତୁ କଣ ହେବ ? ଯଦି କେବେ ଦିନ ଆସିବ, ମୂହଁକୁ ମୂହଁ ଗୁହିଁ କେହି ଯଦି କହିଦେବ ତୁମର ମୂ'ପଣ କେହି ସ୍ୱୀକାର କରେ ନାହିଁ, ତୁମର ବଡ଼ପଣ ବୃଥା ଛଦ୍ମବେଶ, ତୁମେ ବିଧାତାର ଅନାସୃଷ୍ଟି, ବିକଟ ନିର୍ମମ ଉପହାସ, ମୁଣ୍ଡରେ ମଳି ହରିଣର ଶିଙ୍ଘ, ପାଦରେ ଛେଳି ଗୋଡ଼, ସେହି ତୁମେ,—ତେବେ କଠିନ ଓ ମୁଣ୍ଡା ଅଧିର ଟୁର୍ଣ ବାଜି ମାଟିର ପ୍ରତିମା କଣ ବୁଝିବ ନାହିଁ ଯେ ସେ ମାଟି ?

ଭାବନାରେ ବାଧା ପଡ଼ିଲା । ଜଣେ ଲୋକ ଧାଇଁଲା ପରି ମାଡ଼ି ଆସୁଛି । ଦୁର୍ବଳ ଲୋକ, ସଦ୍ୟ ଯେପରି ରୋଗରୁ ଉଠି ଆସିଛି । ଭେଣ୍ଡା ଲୋକ, ତାର ମଝି ଭୁରୁ ହାଡ଼, କିନ୍ତୁ ହାଡ଼ହିଁ କେବଳ, ଅନ୍ୟ ଜିର୍ଣ୍ଣ କାମିଜ୍‌ର ଛିଣ୍ଡା ବୋତାମ ଯୋଗୁଁ ଦିଶୁଛି ବିଦାକଠି ପରି ଗୁଡ଼ିଏ ହାଡ଼ର ସାମ୍ନାରୁ କଛି । ବଡ଼ ବଡ଼ ଆଖି, ସେଠି ଅଟଳ ପ୍ରତିଜ୍ଞା, ତାକୁ ବଢ଼େଇ ଦେଉଛି ତାର ଚଉଖୁଣ୍ଟରେ ଚବୁକର ହାଡ଼ । ଅସ୍ୱାଭାବିକ ମୂର୍ତ୍ତି, ହାତରେ ଗୋଟାଏ ବାଡ଼ି ଧରିଛି, ଟାଣି କରି ଧରିଛି ।

ସାର ରାଘବ କହିଲା "ଅରେ ବିଶ୍ୱନାଥ ବାବୁ, ଆହା ବଡ଼ ବେମାର ପଡ଼ିଗଲେ । କେବେଠୁଁ ଉଠିଲେଣି ? ଭଲଛନ୍ତି କୁଆଡ଼େ ଏତେ ତରବରରେ—"

"ନମସ୍କାର ସାର ରାଘବ ବାବୁ, ମତେ ଅଟକାନ୍ତୁ ନାହିଁ, ଯାଉଚି ଗୋଟାଏ ହିସାବ ସଫା କରିଦେଇ ଆସେଁ । କପିଳା କଣ ନ କଲା—"

"ହଉ ଏତେ ବ୍ୟସ୍ତ କାହିଁକି, ରହନ୍ତୁ ରହନ୍ତୁ । ଆମେତ ବର୍ତ୍ତମାନ ଆସିଛୁଁ ଆପଣଙ୍କ ଘରଙ୍କ ପାଖରୁ—"

"ଖଣ୍ଡ !" ସେ ଗର୍ଜନ କଲେ "କିଏ କହାର ହଜିଛି ? ସାନଖଣ୍ଡ ହେଇ ମୂଲ ଲାଗି ତାକୁ ପଠେଇଥିଲ ମଣିଷ କଲ । ମସ ମସ ବେମାର ପଡ଼ିଲା ଖଂଜା ନଅକାଠି ନାଇଲା, ତାର ହଜାର ହଜାର ଟଙ୍କା ଥାଇ ପୁଣି ଜମିଟିକକ ପାଇଁ ନାଲସ୍ ନୋଟିସ୍ ପଠେଇଚ-ହେଁ-ଦଜ୍ଜତ ରଇଥା—"

ମେଞ୍ଚାଏ ଧୂଳି, ଶୁଖିଲା ପତ୍ର, ଏକାଠି ହୋଇ ଭଉଁର ଭଉଁରିକା ବୁଲୁଛି ଖଣ୍ଡିଆ ଭୂତ, ପବନର ବେଗରେ ତାର ବଳ, ଜଦୁଜଦିଆ ଝାଞ୍ଜିରେ ତାର ତାଣ୍ଡ, ସହରର ରାସ୍ତାରେ ବାମ୍ଫବର ଖଁଭୂତ ପରି ବୁଲୁଛି ବିଶ୍ୱନାଥ । କହିଲେ " କଣ ଏକଥା ଖାର ରାଘବ ?"

ସେ କହିଲେ "ସେ ଆଉ ଏକ ଅଧ୍ୟାୟ ।"

"ବଡ଼ ଗୋଲମାଲ କରିବ ସେ ମୁଁ ଜାଣିଚି, ଦେଖିଲ ନାହିଁ କେମିତି ଆଖି କେମିତି ମୁହଁ ବାଡ଼ କେମିତି ମୁଠେଇ ଧରିଛି ।" ଭାବୁଥାଏଁ ପ୍ରତିମା—ପ୍ରତିମା—ଏଇକଣ ଦୋଷ ? ଖାର ରାଘବ କହିଲେ—"ଭୟ ନାହିଁ, ଭିତରୁ କବାଟ ବନ୍ଦ ହେବ, ପଜ୍ଜା ଧର ।"

—o—

## ଆବେଦନ

ସେମିତିଆ ଗୋଟାଏ ଶାନ୍ତ ପାହାନ୍ତ ପହର ଯେମିତି ମଣିଷ ଜୀବନରେ ଅଗଣିତ ଥର ଆସେ ଯାଏ । କିଛି ଘଟେ ନାହିଁ । ଘନେ ବ ପଡେ ନାହିଁ ପଡେ଼ । ସେମିତି ଆସିଥିଲା ସେ ବେଳ । ପଦାରେ ଆଲୁଅ ହାଲୁକା ମୁଗୁନି ବର୍ଣ୍ଣର । ଗଛଗୁଡ଼ାକ, କୋଠା ଗୁଡ଼ାକ ବସ୍ତୁତ ଭିତରୁ ଖୋଲି ହୋଇ ଠିଆ ହୋଇଥିଲେ, ଉତ୍ସାହ ନାହିଁ । ଆଡ଼ମ୍ବର ନାହିଁ । କେବଳ ସେମାନେ ଅଛନ୍ତି, ସେଠାରେ କ ହବୁଦନେ ଅଛନ୍ତି, ଥିବେ, ଦେଖିଲେ ଲାଗେ ଏମିତି । ତଳେ ହଳଖ ଓସାର କଳାରାସ୍ତା । ବିଜୁଳି ଆଲୁଅ ନିଭି ଯାଇଛି । ଦିନର ଆଲୁଅ ଫୁଟିନି ନାହିଁ, ଆକାଶ ଅଳ୍ପ ମେଘୁଆ ଥିଲା ବୋଧହୁଏ । ତାର କାହାର ହେତୁ ନଥିଲା । ଅଥଚ ଏଇ କିଛି ନ ଘଟୁଥିବା ଆକାଶ ତଳେ ତଳେ ଘଟଣା ଘଟୁଥିଲା । ଶହେ ବାଇଶି ନମ୍ବର ରିକ୍ସାର ଚେନ୍‌ଟା କେମିତି ଛିଣ୍ଡିଗଲା ସେ ରିକ୍ସାବାଲା ନାବ ସାମଲ ଓହ୍ଲେଇ ପଡି ଚେନ୍‌ଟାକୁ ଦୁଇ ହାତରେ ଧରି ଅନ୍ଧ ହେଉଥିଲା । କ'ଣ କରିବ । ରାସ୍ତାକଡ଼ର ଦୁଇଟା ଗଛ ଉପରୁ ଦି'ଟା କଜଳପାତି ଡକାଡକି ହେଲାପରି ଗୀତ ବୋଲୁଥିଲେ । ସଡ଼କ କଡରେ ପାନ ଦୋକାନ ପାଖେ ଗୋଟିଏ ବୁଢା କୁକୁର ଆପେ ଖୋଳିଥିବା ଗାତ ଭିତରେ ଅଣ୍ଟାପାକେ ବସିରହି ସବୁଦାନ୍ତ ବାହାର କରି ଗୋଟାଏ ବେସୁର ବୋବାଳି ଛାଡୁଥିଲା । ତାର ଆଖି

ଘୁଅରର ତନଟା କୁକୁର ଆଜି ଗୋଟାକ ପଛେ ପଛେ ଧାଇଁ ଧାଇଁ ଯାଉଛନ୍ତି, ସେ ଦଉଡ଼ାରେ ଯୋଗଦେବାକୁ ତା'ର ସାମର୍ଥ୍ୟ ନାହିଁ । ଜନ୍ମ ମୃତ୍ୟୁ, ସ୍ନେହ ହାର ମାର ପିଟ୍ କେତେ କ'ଣ କେଉଁଠି ଘଟିଛି ଏ ଘର ଭିତରେ । କିନ୍ତୁ ଏକାଠି ଦେଖିଲେ ନେସିଦେଲି ପର ଗୋଟାଏ ସକାଳ, ତା'ର ନାଁ ନାହିଁ ।

ସହରର ଶବ୍ଦ ଆସ୍ତେ ଆସ୍ତେ ବଢ଼ି ଉଠିଲା । ତା ସଙ୍ଗେ ସଙ୍ଗେ ବଢ଼ି ଉଠିଲା ସହରର ଗହଳ ଆଉ ପଦାରେ ଆଲୁଅ । ବଣିଷ୍ଠ ବ୍ୟକ୍ତି ଶ୍ରୀପଦ୍ମକାନ୍ତ ନିଶଙ୍କ ଆପଣା ଶୋଇବା ଘର ପଲଙ୍କ ଉପରୁ ଅଣ୍ଟା ମିଟିମିଟି କରି ଝରକା ବାହାରକୁ ଅନାଇଁଲେ । ପୁଣି ଆଖି ବୁଜିଦେଲେ ଯେପରି କ ନଦୀ, କେଉଁଠି ଫାଙ୍କା ନାହିଁ । ପଦ ପଦବୀ, ଅଧିକାର, କର୍ତ୍ତୃତ୍ୱ, ଅପଣାର ଏଇ ଘର ଚେୟାର, ଚଳିବାକୁ ନିଜର ହୋଇ ଧନ,— ଧନ ଦେବାକୁ କିଛି ନାହିଁ । ଆଉ ଟିକଏ ହେଲେଇ ପଡ଼ି ଉଠିଯିବେ ପୁଣି ସେହି ଆଖି ଯୋଡ଼ିକ ଖୋଲିଯିବ, ସେଥିରେ ସେ ଧନଯାକ ଲାଗି ଖୋଜିବ । ବଡ଼ ବଡ଼ ଅଖି, ଅଳ୍ପ ଅଳ୍ପ କାଚ ପରି ଦିଶିଲଣି ଡ଼ୋଳା ଉପଚ, ଅଳ୍ପ ନାକର, ତେକା ମୁହଁରେ ଗାଲ ଦିଟା ଢଙ୍ଗ ଢଙ୍ଗ ହୋଇ ଓହଳି ପଡ଼ିଛି । ସେ ହିଏ ସେ ବୁଢ଼ାଣୀକୁ ଗନ୍ଧିଉଛି । ଓଁଠ ଉପରେ ହଳଦି ବୋଳିଲା ପରି ଚଟା କପାଳର ବର୍ଣ୍ଣ । ପାଞ୍ଚଶ ଲାଗିଥିବା ରୂପା ତାରକସି କାମ ପରି ମୁହଁର ଗ୍ଲାଚ ଡାଲୁ ହୋଇ ଉଠି ଉଠି ଚଲି ଯାଇଛି । ପୁଣି ସେହି ମୁହଁ ଅଧଚାଆଁ ଅଧାନିଦରେ ଆଉଜି ପଡ଼ିଲା ।

ନିଶଙ୍କ—ଏ ନାଁ ଦେଇଥିଲେ ବାପା, ଯେତେବେଳେ ଏ ଜାତି ଲଢ଼ୁଆ ଥିଲା । ସେତେବେଳେ ନିଶଙ୍କ ହୁଏତ ଫରଧେର ହେଉଥିଲେ । ତା ପରେ ନିଶଙ୍କ ଲଙ୍ଗଳ ଧରିଲେ, ରଣଷଡ଼ୁଙ୍କୁ ଦ.

ଡୋଙ୍ଗରଗଡ଼ ଗୋଟିଏ ବଡ଼ ଚାଷୀ ଗାଁ । ପଚିଶ ବର୍ଷ ତଳେ, ସେତେବେଳେ ଛ ବର୍ଷ ପୂରୁଥାଏ ନଶଙ୍କ, କଲମ ଧରି ଶିଖିଲେ । ଗାଁ ଚାଟଶାଳୀରୁ ସହରର ଇସ୍କୁଲ୍, ସେଠୁ ଆହୁରି ଉପରକୁ । ତା'ପରେ ଆସିଲା ନୂଆ ଜୀବନ, ନଶଙ୍କ ଗାଦିମାଡ଼ି ଚୌକିରେ ବସିଲେ । ଲୋକେ ତାଙ୍କୁ ଦଣ୍ଡବତ କଲେ । ନଶଙ୍କ ଅନୁଭବ କଲେ ସେ ବଡ଼, ସାଧାରଣଙ୍କଠୁଁ ତାଙ୍କୁ ଟିକେ ଉଚ୍ଚେ ଦିଶିବାକୁ ହେବ, ଗମ୍ଭୀର ହେବାକୁ ପଡ଼ିବ, କାର୍ଯ୍ୟ ଉଠାଇବା ଲାଗି ଲୋକଙ୍କ ସଙ୍ଗେ ଆପଣା ବ୍ୟବହାରକୁ ଏମିତି କରିବାକୁ ପଡ଼ିବ, ଯେପରି କି ସେମାନେ ତାଙ୍କୁ ଭଲ ନ ପାଆନ୍ତୁ ପଛକେ ତାଙ୍କ କଥା ମାନୁଥିବେ । ସେହି ଧାରଣାରୁ ଉତ୍ପତ୍ତି ହେଲା ସେହି ଯନ୍ତ୍ର, ଲକ୍ଷାଏ ଲୋକ ଯାହାକୁ ଡରନ୍ତି, ମାନନ୍ତି । ସେମାନଙ୍କ ସେ ମୁଣ୍ଡିଆଳ । ଯେ ତାଙ୍କୁ ନ ମାନନ୍ତି, ସେମାନଙ୍କ ସଙ୍ଗେ ତାଙ୍କର ସମ୍ବନ୍ଧ ନାହିଁ । ସେଠି ନୁହେଁ ତାଙ୍କ ଦୁନିଆଁ । ତାଙ୍କ ଦୁନିଆଁର ଲୋକ ତାଙ୍କ ନାଁ ପଡ଼ିଲେ ଡରନ୍ତି । କେମିତି ଏକ ଅଚିହ୍ନ ଭଙ୍ଗୀରେ ବାଙ୍କି ହୋଇ ରହେ ସେମାନଙ୍କ ଦେହ । ଆଖିରେ ଦୁର୍ବଳ ବାଧ୍ୟପଣର ଛାଇ ଘୋଟେ, ମୁହଁରେ ଯେଉଁ ହସ ଫୁଟେ, ସେ ଭୟର ହସ । ଗୋଟାଏ ଆଚ୍ଛନ୍ନ ଅଭିଭୂତ ଭାବ ସହିତ ଭୟର ମୁଖା । ସେହି ଠାଣି ହି ଦେଖିବାକୁ ଖୋଜନ୍ତି । ନଶଙ୍କ, ମୋଟା କଳା ଢେରଢିଆ ଚଷମା ପିନ୍ଧି ଧୂଆଁ ପରେ ଧୂଆଁ ପିଆ କଳା ଚିଲମର ନାଡ଼ିକୁ କାମୁଡ଼ି ଧରି ଯେତେବେଳେ ସେ ଗାରଡ଼େଇ ଚାହାଁନ୍ତି, କାମିଜ ଉପରେ ବେକତଳେ ମୋଟା ଫାଶ ପଡ଼ି ଓହଳିଥାଏ, ତିନି ଆଙ୍ଗୁଳି ଓସାରର ଲମ୍ବା କଳା ପଟି । ଦେଖନ୍ତୁ, ତଉଲନ୍ତୁ । ହଁ ଠିକ୍ ଅଛି, ଏ ଯନ୍ତ୍ର କାମ କରିବ । ନ ହେଲେ, ନା ଏ ଯନ୍ତ୍ର ଠିକ୍ ନାହିଁ । ମରାମତି କରିବାକୁ ପଡ଼ିବ । କେଉଁ ଯନ୍ତ୍ର ଉପରେ ବ୍ୟକ୍ତିତ୍ୱ

ଗ୍ରହରେ ହୋଇ ପଡ଼ନ୍ତି, ସେହି ତାର ସାଧାରଣ ରୋଗ, ସେ ବାରେପ ରନ୍ତି । କେଉଁ କାଳଟା ନିଜେ ଭାବିବାକୁ ଆରମ୍ଭ କରି ଦେଲାଣି, କିଏ ବୁଢ଼ାଲାଣି କଳ୍ପନାରେ । ସେ ଭାବନ୍ତି ଯେ ମନମସ୍ତାବ ମଣିଷକୁ ସୁଖ ଦେଇପାରେ, ଈଶ୍ବର ତାକୁ ଉନ୍ନତ କରିପାରେ, କିନ୍ତୁ ଚର୍ମରେ ତା'ର କଳପଗିଆଁ ରହେନାହିଁ । କାର୍ଯ୍ୟ ଉତ୍ପାଦନ ନଷ୍ଟ ହୁଏ । ମହାମତ୍, ମରାମତ୍ କାମ ଭୁଲୁ ରଖିବାକୁ ପଡ଼ିଲ । ଆପଣା ଅଭିଜ୍ଞତାରେ ନାନା ଉପାୟ ସେ ଆବିଷ୍କାର କରିଛନ୍ତି ନାନା ପ୍ରକାର କାହାଣୀ ଆଉ ଠାଣୀ ଖେଳିବା ଲଢ଼ାର ନାନା ସ୍ୱରର ଢଙ୍ଗୀ । କାହା ମୁହଁକୁ ଚାହିଁଦେଇ ଥରେ ପ୍ରୟୋଗ କରି ଦେଲେ ସେ ଖାଉଁ କିପଡେ । କାହାକୁ ଟିର ଆଖିରେ ଅନାଇଁ ଟେବୁଲ୍ ଉପରେ ଗୋଟାଏ ଚାପ୍ପା କୁଟିଦେଲେ ତେଣେ ରକ୍ତ ମାଂସର ବ୍ୟକ୍ତିତ୍ୱଟା ନୋଚାକୋଚା ହୋଇ ସତେ କି ସାଧା କାଗଜ ପାଲଟି ଯାଏ । ତାରିଆଡେ ଦୁର ପଡ଼ିଯାଏ । କଳ-ମାନଙ୍କର ତତ୍ପରତା ବଢ଼ିଯାଏ । ପ୍ରତିଦାନରେ ମିଳେ କଳା-ହାତରେ ଗୋଛା ଗୋଛା ଦଣ୍ଡବତ । ଆଜ୍ଞା ଆଧୀନ୍ୟମସ୍ତ ତାହାଣୀ । କିନ୍ତୁ ତାଙ୍କୁ ଗ୍ରହଣ କଲବେଳକୁ ସେ ନିଜେ କଳ ଟିରେ ରଖି ପାରନ୍ତି ନାହିଁ । ସତେ ଯେପରି କି ଏତେ କଳ ଖାଇ ଖାଇ ତାଙ୍କର ବ୍ୟକ୍ତିତ୍ୱ ଉଲ୍ଲାସରେ ଫୁଲି ଉଠେ । ତାଙ୍କ ନିଜର ଏକ ପ୍ରକାର ବିଶ୍ୱାସ ହୋଇ ଯାଇଥିଲା ଯେ, ସେ ଯୋଗ୍ୟତମ ମଙ୍ଗୁଆଳ, ତାଙ୍କୁ ଛାଡ଼ିଲେ ଏପରି କୁଶଳରେ କାର୍ଯ୍ୟ ଚାଳିବା ଅସମ୍ଭବ । ସେ ଦୁର୍ମୂଲ୍ୟ ।

ରାତି ଶେଷରେ ନିଶଙ୍କ ଗୋଟାଏ ସ୍ୱପ୍ନ ଦେଖିଥିଲେ, ସେହି ସ୍ୱପ୍ନଟା ଚେତନା ଭିତରେ ମିଞ୍ଜି ମିଞ୍ଜି ହୋଇ ଧକଧକଉଥାଏ । ସ୍ୱପ୍ନଟା ପଙ୍ଗପାଳ ବିଷୟରେ । ସେମାନେ ଆସିଛନ୍ତି, ସାଇଁ ସାଇଁ ହୋଇ

ଶୁଭୁଛି ତାଙ୍କ ସୁଅ, ଯେ ଘନ ଘଡ଼ଘଡ଼ରେ ଆକାଶ ଅନ୍ଧାର ପଡ଼ିଯାଉଛି । ବୁଢ଼ା ଝରକାରେ ବେଳେ ବେଳେ ଠାଇଁ ଠାଇଁ ହୋଇ ପିଟି ହେଉଛି ସେ ପଙ୍ଗପାଳର ଝଡ଼ । ଥୋଡ଼ାଏ ପଙ୍ଗପାଳ ଝରକା କାଚ ଉପରେ ବସି ସେଥିରେ ମୁହଁକୁ ଘଷୁଛନ୍ତି । ପଞ୍ଚ ଏ ସେ ଘର ଭିତରକୁ ଅନାଇଁଛନ୍ତି । ସେ ଘରେ ଉପାୟ ପାଞ୍ଚିବାକୁ ମନ୍ତ୍ରଣାସଭା ବସିଛି । ସବୁ ଦୃଷ୍ଟି ତାଙ୍କର ମୁହଁରେ ବନ୍ଧାଛି । ପଙ୍ଗପାଳ ବି ତାଙ୍କୁହିଁ ଚାହିଁଛନ୍ତି ତ, ଆଖି ଦି ଦିଟା ବଡ଼ି ବଡ଼ି ଉଠୁଛି ଯେ, ପିଲାଙ୍କ ଖେଳଣା କାଚ ଗୁଲି ପରି ଦିଶୁଛି । ଘୃତ ଚଳ ଆଲୁଅ ଜଳାଇ କାଚ ସେପଟେ କାଚରେ ଲେପିହୋଇ ଘର ଭିତରକୁ ତାଙ୍କୁ ହିଁ ଚାହିଁରହିଛି ଗୋଟାଏ ପତ୍ତମାଙ୍କର । ଆସ୍ତେ ଆସ୍ତେ ତାଙ୍କର ଓଠ ଥରିଲଣି, ଏଥର ସେ ଭାଷଣ ଦେବେ, ସମସ୍ତେ ଅପେକ୍ଷା କରି ରହିଛନ୍ତି । କାନ ଅତରା ପଡ଼ୁଥିବା ଠଣ ଠଣିଆ କୁକୁଡ଼ା ବୋବାଳିରେ ହଠାତ୍ ସଭାଟା ଉଭେଇଗଲା । ପଦାରେ ସଡ଼କରେ ଅନ୍ନଆଗଦାର ଟିଣ ଉପରେ ଚଢ଼ି ଗୁଡ଼ିଏ ଫୁଟେଲର ବଡ଼ ଛଉକା ଗଞ୍ଜାଟାଏ ବିଜୟ ଧ୍ୱନି ଦେଉଛି । ବିରକ୍ତ ଲାଗିଲା । କେବଳ ଏ କୁକୁଡ଼ା ବୋବାଳି ସେ ବିରକ୍ତିର କାରଣ ନୁହେଁ, ସ୍ନାୟୁଶ ଚଳାରେ କେଉଁଠି କ'ଣ ଅସୁସ୍ଥ ଲାଗୁଛି । କେତେକେତେ ଲୋକ ପଦାରେ ତାଙ୍କୁ ଅପେକ୍ଷା କରିଥା'ନ୍ତି, ଏକାଠି ବହୁତ ସ୍ୱରରେ ଗୁଣୁଗୁଣୁ ହୁଅନ୍ତେ । ଆଜି ତା ନାହିଁ । ଆପଣା ହତା ଫାଟକ ପାଖରେ ଯେଉଁଠି ଗୋଲ ଘଡ଼ି ଉପରେ ପାଟଫୁଲର ପେନ୍ଥୁମାନ ଭରି ଦେଇଛି, ତାହାର ତଳେ ଦି ପାଖେ ଦିଟା ମଣିଷ ଖୁଣ୍ଟ ଦିଶେ, ଆଜି ତା' ନାହିଁ । ଏ ବର୍ଷରେ କେହି ନାହାନ୍ତି, ଖାଲି ସେ ଏକୁଟିଆ । କାନ୍ଥର କାଚ ଆଲମାରି ଭିତରେ ସାତସରିଆ କର୍ପୂର ମାଳଟାଏ ଝୁଲୁଛି । ହୁଏତ ତା'ର ବି ଅଛି କିଛି ସନ୍ଦେଶ । ସ୍ପଷ୍ଟ ହୋଇ କିଛି

ତ ଧୈର୍ଯ୍ୟ ବାନ୍ଧି ହେଉନାହିଁ, ତଥାପି ବିରକ୍ତ ଲାଗୁଛି । ଯେପରି କ ବନ୍ଦିନୀ ଟା ଆପଣା ଭିତରୁ ବାହାରି ପଡ଼ିବାକୁ ବୋହିଯାଉଛି । କାନ୍ଥ ଘଣ୍ଟାରେ ଦେଖୁଛି, ସାତଟା ବାଜିବାକୁ ଦଶ ମିନଟ୍ ବାକି ଅଛି । ସେ ଉଠିପଡ଼ି ବିଜୁଳି ଉପରପେଡ଼ର ଚାପବୋତାମ ଚିପିଦେଲେ, ଆଗେ ଅଗ୍ରେ ଜ୍ୱଳି ଆସନ୍ତା ଦୁଇଟା ଜିନିଷ, ଗୃହା ଆଉ ଖବର କାଗଜ । କେହି ଆସିନେଇ ନାହିଁ । ଆଖିରେ ହାଲୁକା ନିଦର ମୋହ ଏବେ ବି ଭରିଥାଏ । ପୁଣି ସେ ବୋତାମ ଚିପିଲେ ଆଉ ମୁହଁ ଟେକିଲେଇ ଅନାଇଁ ରହିଲେ କାନ୍ଥରେ ମଢ଼ାହୋଇଥିବା ଆପଣାର ତେଲଛବିକୁ । ତିରିଶ ବର୍ଷ ବେଳର ସେଇଟି, ସୁନ୍ଦର ଦିଶେ, ଉତ୍ସାହ ଦିଏ । ସେଇ ସେଠି ସେ, ନିଜେ । ତଥାପି ସେଥିରୁ ପ୍ରେରଣା ମିଳିଲା ନାହିଁ । ଘଣ୍ଟି ଶବ୍ଦ ଶୁଣି ସାନ ଝିଅ ମିନି ଆସି ପହଞ୍ଚିଲା, ପଛଆଡ଼େ ଦୁଇକେରା ବେଣୀ, ପଞ୍ଜାବୀ ପୋଷାକ । ଘର ଭିତରେ ଏଇ ଗୋଟିକ ତାଙ୍କ ପାଖକୁ ଭରସି ଆସେ । ସମସ୍ତଙ୍କ ଆଶା ଉତ୍କଣ୍ଠାକୁ ନେଇ ତାଙ୍କ ପକ୍ଷେ ଭାଷା ଦିଏ, ହସି ହସି କହିଲା
“କ’ଣ ବାପା ?”

ତାଙ୍କ କଣ୍ଠରେ ରାଗ ଅଟକାଇ ଆଗ ଗୁଡ଼ାଏ ଘଡ଼ ଘଡ଼ ଶବ୍ଦ ବାହାରିଲା, କହିଲେ, “କୁଆଡ଼େ ଗଲେ ସମସ୍ତେ ?”

“ବୋଉ ହେଉରିକା ତଳେ ଅଛନ୍ତି, ବୋଉ ବଗିଚାରେ ଶାଗ ତୋଳୁଛି, ଅପା, ଭାଉଜଉ ତା ହାଙ୍ଗରେ, ରମା ଭାଇ ଶୋଇଛି, ଆଜି କୁଆଡ଼େ ତା ଅଙ୍କ ପରୀକ୍ଷା ଅଛି ଯେ, ମୁଣ୍ଡ ଟଣା କରୁଛି । ଟିମା ଭାଇ ତା ସାଙ୍ଗ ପିଲା ଆସିଥିଲା କୁଆଡ଼େ ବଜାରକୁ ଯାଇଛି—”

“ଘୁଁଃ, ଗୃହା କୁଆଡ଼େ ଗଲା ?”

ପୃଷ୍ଠାଙ୍କୁ ଝାଡ଼ା ଦେଉଛି, ଜର, ସେ ଉଠୁନାହିଁ !

"ତ, ରଘୁଆ କୁଆଡ଼େ ଗଲା । ଏତେ ବେଳ ହେଲାଣି ଆସିନାହିଁ ?"

"ଆଜ ସେମାନେ କେହି ଆସି ନାହାନ୍ତି ବାପା," ଆଗ୍ରହରେ ମିନ ପଚାରିଲା "ଆଜ ସେମାନେ ଆସିବେ ?"

ଏଇଁ, ଆସ୍ପଷ୍ଟ ହୋଇ ଗୋଟାଏ ଯନ୍ତ୍ରଣାତା ନେଇ ତାଙ୍କୁଣି ଠେଲିଦେଇ ଉପରକୁ ଉଠୁଛି । ତଥାପି ପୁଣି କହି ହୋଇଗଲା "ପୁଷ୍ପାଙ୍କୁ ଖୋଡ଼ା ହୋଇଛି ତ ଟେଲିଫୋନ୍ କରି ଡାକ୍ତର ଡାକିଲ ନାହିଁ କାହିଁକି ? କାହାର ମୁଣ୍ଡରେ କ'ଣ କାଟିଗଲା ଗୋବର ନାଇଁ ?" ଗାଲ ହଡାକୁ ଏକାଠି ଶୋଷି ନେଇ ନାକ କୁଞ୍ଚୁଣ୍ଡା କରି ଭ୍ରୂଲତାକୁ ଟାଙ୍କି ଦେଇ ଯେତେବେଳେ ସେ ଏହି ବାକ୍ୟ ଉଚାରଣ କରନ୍ତି, ସେତେବେଳେ ସାମ୍ନାରେ ଗଣ୍ଡିରୁ ମୁଣ୍ଡ ତଳକୁ ଝୁଙ୍କିପଡ଼େ, ଗୋଟା ଗୋଟା ପ୍ୟାଣ୍ଟ୍ ଖୋଳ ଭିତରେ ଧଡ଼ ଧଡ଼ ହୋଇଉଠେ ଗୋଡ଼ଦେଙ୍ଗା । ମନ ଉସତରେ ସେ ଅଧର ପଦ ଯୋଡ଼ିଦିଅନ୍ତି, – "ଟିକଏ ବ ନାହିଁ ? କେମିତି କାମ ଚଳେଇବ କହିଲ ?"

ମିନ ଉଠିଲା ନାହିଁ । କହିଲା "ଟେଲିଫୋନଟା ତ କାଲି ଅପରେଟରଠୁଁ ଉଠେଇ ନେଲେଣି ।" ଅଳ କଳପରି କହିଲା, "ଆମ ନିଜର ଗୋଟାଏ ଟେଲିଫୋନ ରଖିବା ବାପା । କାଲି ମୁଁ ସ୍କୁଲ ଗଲିନାହିଁ, କ'ଣ ପଢ଼ାପଢ଼ି ହେଲା ସୁଜାତାକୁ ପଚାରି ବୁଝିଥା'ନ୍ତି ଯେ, ଫୋନ୍ ନାହିଁ ।"

ସେ ଦୀର୍ଘଶ୍ୱାସ ନେଇ ସଳଖ ହୋଇ ଶୂନ୍ୟକୁ ଚାହିଁଲେ । ମୁଣ୍ଡରୁ ଅଳିଚି ସଫା ହୋଇଯାଇଛି । ମିନ ବୁଝାଇବା ଆବଶ୍ୟକ ନ ଥିଲା । ରଘୁଆ, ଧନଆଁ, ସଲିମ ମିଆଁ ଆଜ ଯେତେ ଯେତେ ସେମାନେ କେହି ଆସିବେ ନାହିଁ । ଆଉଁ ଧାଡ଼ି ଧାଡ଼ି ହୋଇ ଠିଆ

ଦେବେନ ସ ଙ୍କ ସ ଙ୍ଗେ । ଆଉ କର୍ତ୍ତୃତ୍ତ୍ୱ ନାହିଁ, ଆଉ ସମ୍ମାନ ନାହିଁ । ନିଜର ତାଙ୍କର ଦର୍ଶନ ପାଇବାପାଇଁ ଆଉ ଛଳ ଚାତୁ- ରୀ କରିବା ଭଳି ଦେବନାହିଁ । ସେ ତାଙ୍କ ଚାକ୍ଷା କାର୍ଯ୍ୟ କ୍ଷେତ୍ରରୁ ଚାନ୍ଦ୍ରନ ପାଇଁ ଅବସର ନେଇଛନ୍ତି । ମିନ ତାଙ୍କ ପିଠିପଟେ ଅପେକ୍ଷା କରିଛି । କହିଲେ, "ପାଣି ଗିଲାସେ ଆଣିଲୁ ମିନ ।" ମିନ ପାଣିଗିଲାସେ ଥୋଇଦେଲା । କହିଲେ "ଯା, ପଳା, ବୋଉକୁ କଢ଼ ରୁଦ୍ଧା କରୁ ।"

ମିନ ଚାଲିଗଲା, ଏଥର ସେ କାଚ ଅଲମାରି ଭିତରର କପୁ ର ମାନଙ୍କୁ ତା ତାତ୍ପର୍ଯ୍ୟ ବୁଝାଇଲେ । କାଲି ସଭା ହୋଇଥିଲା, ତାଙ୍କର ବିଦାୟ ସଭା । ଥାଳିଆ ଥାଳିଆ ହୋଇ ସଜା ହୋଇଥିଲା ରସଗୋଲା, ଛେନାଗଜା, ସିଙ୍ଗଡ଼ା, ସେଉ । ତା'ପାଖରେ ବୁଢ଼ା କପ୍ । ବକ୍ତୃତା ହୋଇଥିଲା । ଅଜ ଅସିଲା ବେଳେ ଗହଳ ହୋଇ ଏତେ ଲୋକଙ୍କ ମୁହଁ । ଅଜ "ନମସ୍କାର, ନମସ୍କାର !" ଏତିକିରେ ତିରିଶ ବର୍ଷର କଳ ଜୀବନଠୁଁ ତାଙ୍କର ସମ୍ବନ୍ଧ ଛିଡ଼ିଗଲା । ତିରିଶି ବର୍ଷର ରୂପ ଏକା ନିମିଷକେ ଖୋଲି ଯାଇଥିଲା । ଯେଉଁମାନେ ହସି ହସି ତାଙ୍କର ଶୁଭକାମନା ତାଙ୍କୁ ବିଦାୟ ଦେଇଥିଲେ, ସେମାନେ ଆଜ କଳ ହୋଇ ନଥିଲେ । ସେମାନେ ବନ୍ଧୁଥିଲେ ବ୍ୟକ୍ତିତ୍ୱର ସମଷ୍ଟି ପରି । କଳ ସେ ଏକୁଟିଆ କାଜେ, ପୁରୁଣା କଳ, ଅକାମୀ । ତାଙ୍କର ଅଗରେ ସେମାନେ ଦାନ ଦେଖାଇଲେ ସିଗାରେଟ୍ ଶୋଷିଥିଲେ । ବିଦାୟ ଗୀତ ଗାଇଲାବେଳେ ସେଥିରେ ଥିଲା ସତେ କି ବିଜୟର ଉଲ୍ଲାସ । ଯେପରି କି ସେତିକିରେ ସମ୍ପୂର୍ଣ୍ଣ ହେଲା ନାହିଁ, ସେମାନେ ତାଙ୍କର ଫଟୋ ନେଇଥିଲେ । ହଠାତ୍ କଳା ହରଣ ହୋଇ ଯାଇଛି । ଅର୍ଜୁନଙ୍କର ହେଲେ ହୋଇଥିଲା ଗାଣ୍ଡୀବ ଧନୁ, ତୋଳି ନପାରି ପଡ଼ିଛି, ବୋହିବାକୁ ଥିଲା । ତାଙ୍କର

କିଛି ନାହିଁ । ଚବିଶି ବର୍ଷର କୋଠାରେ କାର୍ଯ୍ୟାଳୟ । ତାଙ୍କ ତଳେ ଦୁଇଶହ ପଚିଆଳ ସଜାସଜ ବର୍ଷର ଭିତରେ ତାଙ୍କର ଅକ୍ଳିଷ୍ଟ ଆସନ । ସବୁ ଏକାଠି ହୋଇ ହଠାତ୍ ପର ହୋଇ ଚାଲିଗଲା ତାଙ୍କ ହାତ ପାହାନ୍ତ ବାହାରକୁ । ନିଃଶେଷ ହୋଇଗଲା ସେ ସଂସାର, ଅଚଳନ୍ତ ହୋଇଗଲା ତାଙ୍କର ସ୍ୱାକ୍ଷର । ପଞ୍ଚାବନ ବର୍ଷ ପୂର୍ବ ଛପନ ଚାଲିଲା, ଜୀବନର ବଡ଼ ଭାଗ ଯେଉଁ ଥିରେ ବନ୍ଧାଥିଲା ତା ସହିତ ତାଙ୍କର ଆଉ ସମ୍ବନ୍ଧ ନାହିଁ ।

ଜୀବନ ତ ଅଛି । ତା ପରେ କ'ଣ ହେବ । ଖାଲି ଖାଇବା କଥା ? ଆଗରୁ ଆଗରୁ ନାନା ଯୋଜନା ସେ ଭାବିଥିଲେ, ମନେ ପଡ଼ିଲା ନାହିଁ ।

ଅବସାଦ ସହିତ ଅଜଣା ଭୟ ଅନୁଭବ କଲେ, ଏଥର ମଣିଷଙ୍କ ସଙ୍ଗେ ମିଶିବାକୁ ପଡ଼ିବ । ପୁରୁଣା ସମ୍ବନ୍ଧ ଖୋଜି-ବାକୁ ନଇଁଯିବାକୁ ପଡ଼ିବ ତଳକୁ ; ନୂଆ ସମ୍ବନ୍ଧ ଲଗାଇବାକୁ ପଡ଼ିବ । କେତେ ଦେବେ ନୂଆ ମୂଲ୍ୟ, ମାନିବାକୁ ପଡ଼ିବ । ଆପଣାର ଅଧିକାର ରକ୍ଷା କରିବାକୁ ଅନ୍ୟମାନଙ୍କ ସଙ୍ଗେ ଭିଡ଼ ଭିତରେ ଲଢ଼ିବାକୁ ପଡ଼ିବ । ହୋଇପାରିବ ତାଙ୍କଦେଇ ?

ଲାଗିଲା ନିତ୍ୟକର୍ମ, ବେଳ ବଢ଼ିଗଲା । ଧୀରେ ଧୀରେ ଆତ୍ମବିଶ୍ୱାସ ଆସୁଥାଏ । ଦେଖିଲେ, ଫାଟକ ବାଟେ ଗୋରୁ ପଶି ଆସୁଛନ୍ତି ।

ଆରେ ! କିଏ ଅଛରେ ? ସେ ଗର୍ଜିଉଠିଲେ । ଅଃ, "ମାଡ଼ ଚକଟି ପକାଉଛନ୍ତି । ଗଲେ ଖାଇଗଲେ ବଗିଚାକୁ ! ଏଇ ରଘୁଆ—" ଏଇଠି ପୁଣି ମନେ ପଡ଼ିଗଲା । ସେମାନେ ନାହାନ୍ତି, ସେମାନେ ଆସିବେ ନାହିଁ । ସ୍ୱାବଲମ୍ବନ ଅଭ୍ୟାସ କରିବାକୁ ପଡ଼ିବ । ଢେଲା ପକାଇ ପକାଇ ଗୋରୁ ପଛରେ ଧାଇଁ ତୋଡ଼ିଦେଲେ ।

ଅଲ୍ଗାକ ଗଳିଁସଳିଁ ନେଇଗଲେ । ବାଁ ଗୋଡ଼ଟା ଉଠାଇଣ ଗୋଡ଼ ସଙ୍ଗେ ତାଳ ରଖି ଚଳିପାରୁ ନାହିଁ । ଆଣ୍ଠୁରେ ଆଜି ବଳାଗଣ୍ଠିର ବ୍ୟଥା । ଗୋରୁ ଚଢ଼ିବା କଥା ମନେ ହେଲା । ଲାଗିଲା ଆପଣା ବାର୍ଦ୍ଧକ୍ୟ ରୂପ ପାଲଟି ଯାଇ ଆଗରେ ଠିଆହୋଇ ଖତେଇ ଖତେଇ ନେଇଯାଉଛି । ଏ ଦେହଟା ତାଙ୍କର ନୁହେଁ । ତାଙ୍କର ଦେହ ନଥିଲା ଏପରି । ସ୍ଥପନ ବର୍ଷର ବାଟରେ ଆସୁ ଆସୁ କେବେ ଝୁଣ୍ଟିପଡ଼ିଲା ସେ ଦେହ ? ଧୀରେଇ ହେଉ ହେଉ ଭାବିଲେ, କୌତୁହଳ ଆଉ ଅବସାଦ ମିଶିଗଲା । ପାଠଶୁଣି ଘରକୁ ଆସିଲେ । ତାଙ୍କର ଅଭିମାନ ହେଲା । ସେ କିଛି କହିଲେ ନାହିଁ । ଘରର ଟେକା ମୂଷା ଘର ଭିତରୁ ଦୌଡ଼ିଆସି ଚୋରୁଙ୍କ ପଛ ପଛ ଖେଦିଗଲା । ନିଜେ ଯେ କ୍ଳାନ୍ତ ହୋଇ ପଡ଼ିଥିଲେ । ପିଣ୍ଡାକୁ ଉଠିଯାଇ ଚୌକିରେ ବସିପଡ଼ି ସାମ୍ନାକୁ ଅନେଇଲେ ।

ସକାଳେ ଏଇ ସାନ ବଖରାରେ ବସି ସେ କାର୍ଯ୍ୟ କରନ୍ତି । ଆଉ ପାଖ ବଖରାରୁ ଟାଇପ୍ ରାଇଟର୍‌ର ସ୍ୱନ ଶୁଭନ୍ତାଣି ଠକା-ଠକ୍ ; "ଓଃ ! କହ ରାଙ୍କ୍ କବାଟଟା ବନ୍ଦ କରିଦେଇ ଟାଇପ୍ କରିବେ ।" ଏତେବେଳକୁ ସେ ଡିକ୍ଟେସନ୍ ଡାକୁ ଥା'ନ୍ତେ । ତୁଣ୍ଡରୁ କଥା ବାହାରିଲେ କ୍ରମେ ସେ କାଗଜ ଉପରେ ହୁଏ ଅକ୍ଷର, ସତେ ଯେମିତି କ ପଥର ଉପରେ ଖୋଳା ହୁଏ ଅନୁଶାସନ । କେତେ ଯା' ଆସ ଲାଗିଥା'ନ୍ତା, କେତେ ଲୋକ ଅପେକ୍ଷା କରିଥା'ନ୍ତେ । ତାଙ୍କର ବ୍ୟକ୍ତିତ୍ୱର ସମଷ୍ଟି ଗଢ଼ିବାକୁ ତାହାଁରୁ ପ୍ରଚ୍ଛ ଲେଖକର କିଛି ଦାନ ଥିଲା । ସେତେବେଳେ ସେ କେବେ କାହା ଆଗରେ କହୁଥିଲେ "କଣ ପିଲା ମଣିଷ କାମ କଲ କଣ । କମ ଧନ୍ଦା ! ରକ୍ତଚାପ ବଢ଼ିଯାଉଛି । ପରିସ୍ରାରେ ଚିନି ପଡ଼ିଲାଣି । ସେମାନେ ବି ଗମ୍ଭୀର ଭାବେ ମୁଣ୍ଡ ହଲଉଥିଲେ । ବିଳାପ ଧ୍ୱନିର ବି

ଗୋଟାଏ ଅର୍ଥ ଥିଲା,—ତାଙ୍କ ଛଡ଼ା ଏ ଜଗ ଚଳିବ ନାହିଁ, ତାଙ୍କ ସ୍ଥାନ ଅପୂରଣୀୟ । ଆଜ ଯେପରି କ ଜେଲମାଛ ସମୁଦ୍ର କୂଳରେ ପଡ଼ ରହିଛି, ପାଣି ଛାଡ଼ ଯାଇଛି ସେ ସେଇ ଆଡ଼କୁ ଅନାଇଁ ରହି ଧୀରେ ଧୀରେ ସଂକୁଚିତ ହୋଇ ଯାଇଛି । କ୍ଷୁଦ୍ର-ଅବସର,— ଖାଲି ଭୁଣ୍ଡର କଥା,—ସତେ କ'ଣ ହୃଦୟ ସେଇଆ ଚାହୁଁଥିଲା ?

ରାସ୍ତାରେ ଚାଲି ଚାଲି ଯାଉଛନ୍ତି ଚାଳିଶ ମଣିଷ ଡଜନ ଜଣ । ସେମାନେ ତାଙ୍କର କୃପାପ୍ରାର୍ଥୀ ଥିଲେ । ତାଙ୍କୁ ଦେଖି ଦେଖି ଆତ୍ମବିଶ୍ୱାସରେ ମନ ପୂରିଉଠିଲା, ଅଜାଣତରେ ପୁରୁଣା ବ୍ୟକ୍ତିତ୍ୱ ଲେଉଟି ଆସିଲା । ସେ ନ ଦେଖିଲା ପରି କବାକୁ ମୁହଁ କରି ବସି ରହିଲେ । ସେମାନେ ଅସିବେ, ଲମ୍ବ ଲମ୍ବ ଦଣ୍ଡବତ କରିବେ ଫାଟକ ସେ ପାଖରୁ । ତା ପରେ ଡରି ଡରି ପାଦ ପକାଇବେ । ଟର୍ଜିଉଠି ସେ କହିବେ—“କିଏ ଆସିଛନ୍ତି ଦେଖତ ।” ସେମାନେ ଆସିଲେ ନାହିଁ । ଦଣ୍ଡବତ ପାଇଁ କ୍ଷୁଧା ଜଳିଉଠିଲା ଅନ୍ତର ଭିତରେ । କେତେ ଲୋକ ଚାଲିଗଲେ, କେତେ ସେମାନଙ୍କର ବୃତ୍ତି ନାନାପ୍ରକାର ବ୍ୟବସାୟୀ, କର୍ମଚାରୀ, ପରବା ବଜାବାଲା, ରିକ୍ସା-ବାଲା, ଚାଲିଛି ସଡ଼କ ଉପରେ ଅଛିଣ୍ଡା ସୁଅ । ଝୁଙ୍କି ରହିଥାଏ ମୁଖାପରି ମୁହଁଟା ରାସ୍ତା ଆଡ଼କୁ ହୋଇ, ତାର ଠାଣିରେ ପରି-ବର୍ତ୍ତନ ନଥାଏ । ଯେପରି କ ଅକୁଳ ହୋଇ ମନ ଭିତରେ ସେ ଧରି-ଥାଏ—ମୁଁ ଅଛି, ମତେ ମାନିଯା, ସ୍ୱୀକାର କରିଯା, ଦଣ୍ଡବତ କର ।

ଯେମିତିକ ପଥରର ମୂର୍ତ୍ତିଟିଏ କେଉଁ ଅପନ୍ତରାରେ ବରଗଛ ତଳେ ନିଶ୍ଚଳ ହୋଇ ବସିରହିଛି । ଆଗିରେ ସେହି କରୁଣ ନିବେଦନ,—ଚାଲିଯା ନାହିଁ, ମତେ ଦଣ୍ଡବତ କରି, ପୂଜାକର—

ରାସ୍ତା ଆରପାଖେ ଧୀର ଭଣ୍ଡାରର ଭଙ୍ଗାରୁଜା ଛପର ଘୁଞ୍ଜୁଣୀ ଘର, ପିଣ୍ଡାରେ ସେ ଖିଅର କରୁଛି । କାନ୍ଥରେ ଦର୍ପଣ ଝୁଲୁଛି । ସିନେମା ବିଜ୍ଞାପନ ଆଜି ସିନେମା ଛବି ମାରୁଛି । ଚାରିଜଣ ଅପେକ୍ଷା କରିଛନ୍ତି । ଜଣକର ନାକତଳେ ଧୀର ଖୁର ଚଳାଉଛି । ନିଶ ବାଗଉଚି ଗମ୍ଭୀର ଦାୟିତ୍ୱ ଯେମିତି ପ୍ରତିଷ୍ଠିତ ହୋଇ ରହିଛି ଧୀର । ଗରାଖ ଆଶଙ୍କା ଓ ଯନ୍ତ୍ରଣାରେ ମୁହଁ କେମିତି ଆଁ କରି ବସିଛି । ଏ ପାଖକୁ ଚାହିଁ ଚାହୁଁହିଁ ଲକ୍ଷ୍ୟ କରୁଛି ବୋଧହୁଏ । ନଣଙ୍କ ଉଠିଯାଇ ପାରିଲେ ନାହିଁ । ଅବସର ନାହିଁ, କାର୍ଯ୍ୟ, ପଥରପଣ ନୁହେଁ । ମଣିଷଙ୍କ ସଙ୍ଗେ ସଙ୍ଗମେଳ, ସାଇତା ଅପନପଣ ନୁହେଁ, ଧୂଳି, ଧୂଆଁ, କାଦୁଅ, ପାଣି ସଙ୍ଗେ ସହଜରେ ମିଶିଯାଇ ମନର ସହଜ ଅଖଳା ପଣ । ସେଇ ବୋଧହୁଏ ମଣିଷ ଜୀବନର ତାତ୍ପର୍ଯ୍ୟ, ସେଇ ଯେଉଁଥିରେ ଏତେ ମଣିଷ ଚଳୁଛନ୍ତି, ନଣଙ୍କ ଆଜି ଗୋଟାଏ ନଣଙ୍କୁ ତାର ବାଣୀ ଶୁଣାଉଥିଲା । ଗୁଡ଼ ଧଡ଼୍ ଧଡ଼୍ ହୋଇ ବିକୃତ ପ୍ରତିଧ୍ୱନି ଶୁଭୁଥିଲା । ଅତୀତ ! ଅତୀତ ! ଆଜି ସେ ଫେରାଇ ହେବ ନାହିଁ । ସେ ଦେହ ବି ଭିନେ ଥିଲା, ଏ ଦେହ ପରି ଓଜନ ନ ଥିଲା । ସେ ଥିଲା ସରୁ, ଚେମେଡ଼ା, କ୍ଷିପ୍ର, ଏ ଦେହ ପରି ଓଦାର ଅଣ୍ଟା ନ ଥିଲା, ଅଟିକା ପେଟ ନ ଥିଲା, ତାର ଥିଲା ବହୁଡ଼ ଅଣ୍ଟା, ସେ ଦେହ ମରି ଯାଇଛି । ତା'ର ସଞ୍ଚୟ ନ ଥିଲା, ଜଞ୍ଜାଳ ନ ଥିଲା, ସେ ଖାଇସାରି ହାଣ୍ଡି ପିଟିଦେଇ ନୂଆ ବାଟ ଧରି ପଳୁଥିଲା । ଏ ମଣିଷଟା ଆପଣା କରିଣି ଆପଣା ଜଞ୍ଜାଳ ଭିତରେ ଠାଣ କରି ପୋତାହୋଇ ରହିଛି ।

ନିଶ୍ଚିନ୍ତ ହୋଇ କଟି ଗୋଟାଏ କରିବାକୁ ପଡ଼ିବ । ନଣଙ୍କ ନିଶ୍ଚୟ କରି ଠିଆ ହୋଇ ପଡ଼ିଲେ । ଆପଣା ସଙ୍ଗେ ଭିଡ଼ା

ଉଦ୍‌ବେଗ ହୋଇ ଏତିକ ଯେପରି କି ସେ ନୂଆକରି ଆବିଷ୍କାର କଲେ । ଦୁଇ ପୁଅ ବ୍ୟବସାୟ କରନ୍ତି, ଜଣେ ବାର୍ଣ୍ଣିଶ, ଜଣେ ଫ୍ଲୁର ଗ୍ରାଇଣ୍ଡିଂ । ଅଳ୍ପରୁ ଆରମ୍ଭ କରିଛନ୍ତି, ସେମାନେ ବଢ଼ିବେ, ଘର ସମ୍ଭାଳିବେ, ଯେତେବେଳେ ସେ ସେମାନଙ୍କୁ କେତେ ଗାଳି ଦେଉଥିଲେ । "ବେପାର କରୁଛ, କଣ୍ଟ୍ରୋଲ, ଅଧିକାର, କ୍ଷମତା, କାହୁଁ ପାଇବ ଏ ସବୁ ।" ଏଥର ସେ ବି ମିଶିଯିବେ । ଇଚ୍ଛା,— ଠିକ୍—ବିଶିଷ୍ଟ ବ୍ୟକ୍ତି ନିଶଙ୍କ ଇଚ୍ଛା ବ୍ୟବସାୟ କରିବେ । ମନ ଫେରିଉଠିଲା । ଏତିକ ବେଳେ ଦେଖାଗଲା ଶଗଡ଼ଟାଏ, କୁଲି ଦୁଇଜଣଙ୍କ ସହିତ ଯୁଗଳବାବୁ ପହଞ୍ଚିଲେ । କାର୍ଯ୍ୟାଳୟର କିଛି ଜିନିଷ ତାଙ୍କ ଅଫିସରେ ଦେବା ଯାଇଛି । ଚଉକି, ଟେବୁଲ, ସତରଞ୍ଜି, ଏହିପରି-ନବାବୁ ଆସିଛନ୍ତି । ପୁଣି ସବୁ ମନେ ପଡ଼ିଲା, ମୁହଁରେ ଦେଖାଦେଲା ବଡ଼ପଣର କଠୋର ମୁଖା, କଟମଟ କରି ଚାହିଁ ରହିଲେ । କିନ୍ତୁ ଯୁଗଳବାବୁଙ୍କ ମୁହଁରେ ଆଧୀନ୍ୟ ନାହିଁ । ସାଧାରଣ ଦଣ୍ଡବତଟାଏ ମରାଇ ପାନ ପଟିଲେ ହସି ହସି ସେ କହିଲେ, "ସେଇ ଜିନିଷ କେଉଁଟା ପାଇଁ ଆସିଲା, କିଏ କାହାକୁ କହିଲେ, ଦେଖାଇ ଦେଲେ ନେଇଯିବ, ଅଉ ଏଇ ଟେଲିଫୋନ୍ ବିଲ୍ ତେର ଟଙ୍କା—" ନମ୍ରଭାବେ ହୋଇ ସେ କହିଲେ "ନେଇଯାଅନ୍ତୁ," ଯୁଗଳବାବୁ ଭିତରକୁ ଆସି କହିଲେ, "କିଏ କହୁଥିଲା ଆପଣ ମନଇଚ୍ଛା ବିକିବେ, ଡବ ପଦ ଜଣେ ତହସିଲଦାର ପାଉଛନ୍ତି ।" ନିଶଙ୍କ ଚଉକିରୁ ତେଇଁପଡ଼ି ଦାଣ୍ଡ କମ୍ପାଇଁ ପଚାରିଲେ, "କିଏ ସେ କହିଲା, ଏ ମିଛକଥା ? ମୋର ଘରେ ବିକା ହେବ ନାହିଁ ।" ସଙ୍ଗେ ସଙ୍ଗେ ସେ ଘରେ ପଶିଗଲେ, ଅଉ ଦୁନିଆକୁ ମୁହଁମୋହିଁ ହେବାକୁ ସାହସ ନଥିଲା ।

—୦—